

ସାହିତ୍ୟ-ପ୍ରେମିକ [illegible]

ଶ୍ରୀମନ୍ କଶୋରଚନ୍ଦ୍ର ଦେବ

# ଝଙ୍କିତକା

ନିଖିଳ ବିଶ୍ୱର  ଭବ୍ୟ ବିପୁଳ ସଂଗୀତ
ସଞ୍ଚିତ ସୁଧାର  ଦେଇ ମଧୁର ଇଙ୍ଗିତ
ଅନ୍ତିମ ଲକ୍ଷ୍ୟର ପଥେ ସେ  ମହାଗୀତିକା
ଗାଇ ଗଲେ ଧନ୍ୟ ଛନ୍ଦେ ମୁହିଁ, **ଝଙ୍କିତକା**

**ବାଞ୍ଛାନିଧି**



## ଲବ୍ଧପ୍ରତିଷ୍ଠ ସାହିତ୍ୟିକଙ୍କର—

# ପ୍ରେରଣା ଓ ଅଭିମତ

କବିତା ଓ ସଙ୍ଗୀତ ଶ୍ରୀମାନ୍ ବାଞ୍ଛାନିଧି ଦାଶଙ୍କର ଜୀବ-ସ୍ରୋତସ୍ୱିନୀର ଦୁଇଟି ଧାରା—ସମାନ ସ୍ୱଚ୍ଛ ଓ ସାବଲୀଳ; ତାଙ୍କର ଜୀବନ ବୃନ୍ତରେ ଦୁଇଟି ପୁଷ୍ପ—ସମାନ ସୁନ୍ଦର ଓ ସୁଗନ୍ଧଯୁକ୍ତ । କବିତା ତଥା ସଙ୍ଗୀତରେ ସାଧକର ଦେଶପ୍ରେମୀ ଓ ସରଳ ମନର କଳାନୁମୋଦିତ ଅନନ୍ୟ ସ୍ୱତଃସ୍ଫୂର୍ତ୍ତି ପ୍ରବାହ ବାସ୍ତବିକ୍ ଅନବଦ୍ୟ । ଶ୍ରୀମାନ୍ ବାଞ୍ଛାନିଧି ତାଙ୍କର ଏକାଗ୍ର ସାଧନାରେ ଉତ୍ତରୋତ୍ତର ଉନ୍ନତି କରନ୍ତୁ ଓ ତାଙ୍କର ଦାନରେ ଆମ ଦେଶର ସାହିତ୍ୟ ଓ ସଂଗୀତ ସୁପୁଷ୍ଟ ହେଉ, ଏହାହିଁ ମୁଁ ଅନ୍ତରର ସହିତ ଚାହେଁ ।

ଶ୍ରୀ କିଶୋରଚନ୍ଦ୍ର ଦେବ
ରାଜା ଅଠମଲ୍ଲିକ
ତା ୧୦ । ୮ । ୪୬

( ୧ )

ଉତ୍କଳର ଜଣେ ଚାରଣ-କବିର ଆସନ ବହୁଦିନରୁ ଶୂନ୍ୟ ଥିବାର ଆମ୍ଭେମାନେ ଅନୁଭବ କରି ଆସୁଥିଲୁ । ଶ୍ରୀମାନ୍ ବାଞ୍ଛାନିଧି ଦାଶଙ୍କୁ ଦେଖି ଓ ତାଙ୍କ ନିଜ ରଚିତ ଜାତୀୟ ଗାନଗୁଡ଼ିକ ନିଜ ମୁହଁରୁ ଶୁଣି ମନେହେଲା ଯେପରି ଉତ୍କଳର ଏ ଅଭାବ ପୂରଣ ହେବା ଉପରେ । ଶ୍ରୀମାନଙ୍କର ଗାନଗୁଡ଼ିକ ସରଳ, ସରସ, ସଙ୍ଗୀତମୟ ଓ

ପ୍ରାଣସ୍ପର୍ଶୀ । ସେଥିରେ ପଢନ୍ତ ଦାଳନ୍ତ ପାଇଁ ଗଭୀର କାରୁଣ୍ୟ ଫୁଟିବା ସଂଗେ ସଂଗେ ସୁପ୍ତ ଜାତିକୁ ଉଠାଇବା ଲାଗି ଗଭୀର ମମତ୍ୱ ଉନ୍ମାଦନା ମଧ୍ୟ ଅଛି । ତାଙ୍କର କେତେକ କବିତା ମୁଁ ପଢ଼ିଛି ଓ ଦେଖୁଛି ଏ ଦିଗରେ ବି ତାଙ୍କର ଭବିଷ୍ୟତ ଉଜ୍ଜ୍ୱଳ । କିନ୍ତୁ ଉତ୍କଳଦେଶ ପ୍ରତିଭାର ଶ୍ମଶାନଭୂମି । ଏଇ ମୃତ୍ୟୁ-ଜିବ, ଅର୍ଥିକ ଦୁରବସ୍ଥା ଭିତରେ କେତେ ଦିନ ସରସ୍ୱତୀଙ୍କ ସ୍ୱର୍ଣ୍ଣବୀଣାକୁ ହାତରେ ରଖିପାରିବେ, ତାହାହିଁ ମୋର ଚିନ୍ତାର ବିଷୟ । ତାଙ୍କ ବୀଣା ଉପରେ ମୁଁ କେବଳ ଅନ୍ତରର ଗଭୀର ଶୁଭକାଙ୍କ୍ଷା ଅଳାଇ ବର୍ତ୍ତମାନ ନୀରବ ରହୁଛି । ଇତି ।

ମାୟାଧର ମାନସିଂହ
ତା ୧୩ । ୧ । ୪୨

( ୩ )

ତରୁଣ ଉପାଧ୍ୟାୟମାନଙ୍କ ଭିତରୁ ଶ୍ରୀମାନ୍ ବାଞ୍ଛାନିଧି ଦାଶଙ୍କର କେତେ-ଗୁଡ଼ିଏ କବିତା ମୁଁ ପାଠ କରିବାକୁ ଓ ତାଙ୍କଠାରୁ ଶୁଣିବାକୁ ସୁବିଧା ପାଇଥିଲି । ତାଙ୍କର କବିତାରେ ଯେଉଁ ମର୍ମସ୍ପର୍ଶୀ ଭାବ ଅଭିପ୍ରକାଶ କରିଅଛି, ତାହା ତାଙ୍କୁ ନିଶ୍ଚୟ ଯଶସ୍ୱୀ କରିବ । ଅଧ୍ୟାତ୍ମିକ, ନୈସର୍ଗିକ ଜାତୀୟ ଭାବ ଓ ସାଧାରଣ କଥାବସ୍ତୁକୁ ତାଙ୍କର ଲେଖନୀ ଅତି ସୁନ୍ଦର ଭାବରେ ପରିସ୍ଫୁଟ କରିପାରିଛି । ଉତ୍କଳର ପୁରପଲ୍ଲୀରେ କବି ଯେଉଁ ଭାବର ଉଦ୍ଦୀପନା ଆଣିବାକୁ ଯାଉଛନ୍ତି, ତାହା ଅମର ଜାତୀୟ ଜୀବନକୁ ଅନେକ ପରିମାଣରେ ପ୍ରଭାବିତ କରିବ । ତାଙ୍କର ସଂସ୍କାରଗତ କବିପ୍ରତିଭା ଦେଖି ମୁଁ ଅତ୍ୟନ୍ତ ପ୍ରୀତିଲାଭ କରିଛି । ତାଙ୍କର ଅଧିକାଂଶ କବିତାର ପ୍ରତି ଛନ୍ଦେ ଛନ୍ଦେ ଅନ୍ତରର ଯେ ଅବ୍ୟକ୍ତ ବାଣୀ ଯେ ରୂପଧାରଣ କରିଛି,

ତାହା ଅଧୁନିକ ତରୁଣ କବିମାନଙ୍କର ଲେଖାରେ କ୍ୱଚିତ୍ ଦେଖିବାକୁ ମିଳେ ।

ଶ୍ରୀ ବ୍ରଜବିହାରୀ ମହାନ୍ତି
ତା ୧୫ । ୮ । ୬୨

( ୪ )

ଶ୍ରୀମାନ୍ ବାଞ୍ଛାନିଧି ଦାଶ ଜଣେ ଆୟୁଷ୍ମାନ ଯୁବକବି, ସ୍ୱାଭାବିକତା ତାଙ୍କ କବିତାର ପ୍ରଧାନ ବିଶେଷତ୍ୱ । ହୃଦୟ-କନ୍ଦରରୁ କବିତା-ତଟିନୀ ଯେତେବେଳେ ଛନ୍ଦର ଯେଉଁ ସରଣୀ ଧରି ଛୁଟିଛି, ସେହି ସରଣୀରେ ତାକୁ ଛାଡ଼ିଦେଇ ତହିଁରେ ତାଙ୍କ ଯୁବହୃଦୟର ଉଦ୍ଦାମ ସ୍ପନ୍ଦନ ସେ ଫୁଟାଇଛନ୍ତି । ଏହି ସହଜ ପ୍ରସ୍ତାବର ଅବକାଶରେ ଯେତିକି କଳା କବିତାରେ ଫୁଟିବାର ସମ୍ଭବ ତାହା ତାଙ୍କ କବିତାରେ ଫୁଟିଅଛି । ଏ ଯୁଗରେ ଜାତିର ହୃଦୟକୁ ଯେଉଁସବୁ ଭାବ ଆନ୍ଦୋଳନ କରୁଅଛି, ସେସବୁକୁ ଶ୍ରୀମାନ୍ ବାଞ୍ଛାନିଧି ନବୀନ ଛନ୍ଦରେ ଓ ସରଳ ତରଳ ଭାଷାରେ ପ୍ରକଟନ କରୁଅଛନ୍ତି । ଭାବ ଓ ସ୍ୱାଭାବିକତା ଯୋଗୁଁ ତାଙ୍କ କବିତା ସର୍ବତ୍ର ଆଦୃତ ହେବ ବୋଲି ମୁଁ ଆଶା କରୁଅଛି । ତାଙ୍କର ଉଚ୍ଚ ଦରର ସହଜ କବି-ପ୍ରତିଭା ଅଛି । ତହିଁର ଉପଯୁକ୍ତ ବିକାଶ ନିମନ୍ତେ ଯେଉଁ ପୃଷ୍ଠପୋଷକତା ଆବଶ୍ୟକ ତାକୁ ସେ ପୃଷ୍ଠପୋଷକତା ମିଳୁ, ଏହାହିଁ ମୋର ତାଙ୍କ ଆନ୍ତରିକ କଲ୍ୟାଣ । ପ୍ରଭୁ ତାଙ୍କୁ ଚିରଜୀବୀ ଓ ଯଶସ୍ୱୀ କରନ୍ତୁ ।

ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ
କଳିଙ୍ଗ ଭାରତୀ, କଟକ
୮ । ୮ । ୪୬

# ଉପକ୍ରମଣିକା

ଉଦୀୟମାନ ଯୁବକ କବି ଶ୍ରୀଯୁକ୍ତ ବାଞ୍ଛାନିଧି ଦାଶଙ୍କର କବିତା-ଗୁଡ଼ିକ ଯେ ଥରେ ପଢ଼ିବ, ସେ ଭୁଲିପାରିବ ନାହିଁ । କବିତା-ଗୁଡ଼ିକ ପ୍ରାଣ ଦେଇ ଲେଖା, କବିତ୍ୱର ଗୋଟିଏ ସ୍ୱତଃ ସ୍ଫୁରଣ ତାଙ୍କ ପ୍ରତ୍ୟେକ କବିତା ଭିତରୁ ଉଙ୍କିମାରୁଛି ।

'ଗୃହଦନ ବୈଷ୍ଣଳ' ଓ 'ତର୍ପଣ' ଏ ଦୁଇଟି କବିତା ବିଶେଷରେ ମୋର ଅନ୍ତଃକରଣକୁ ପ୍ଲାବିତ କରି ଦେଇଛି । ସାଧନା ଓ ସୁଯୋଗ ପାଇଲେ, ସେ ଯେ ଦିନେ ଓଡ଼ିଶାର ସର୍ବଶ୍ରେଷ୍ଠ କବି ହୋଇ ଉଠିବେ, ଏ କଥା ମୋତେ ଖୁବ୍ ସମ୍ଭବ ଜଣାପଡୁଛି ।

ଶ୍ରୀ ଜଗତ୍‌ବନ୍ଧୁ ମହାପାତ୍ର
୨୧-୧୧-୪୨

# ସୂଚୀ

# ପ୍ରଣତି

କିରଣେ ତବ ସ୍ୱର୍ଣ୍ଣଘଟେ ବିପୁଳ ଛବି ଜାଗେ,
ଚରଣେ ତବ ଚନ୍ଦ୍ରକାନ୍ତ କରୁଣା-ଉଷା ମାଗେ ।

ରୂପପରଦା ଅନ୍ତରାଳେ ବଂଶୀ ତବ ବାଜେ,
ଛନ୍ଦେ ତବ ନିତ୍ୟ ନବ ମଞ୍ଜୁ ଛବି ସାଜେ ।

ଅରୂପକର ସ୍ପର୍ଶେ ଖେଳେ ରୂପ ଉର୍ମ୍ମିମାଳା,
ଗନ୍ଧହୀନ ହସ୍ତେ ଭସ ଗନ୍ଧଭରା ଥାଳା ।

ଅବଶ ହୋଇ ରସର ଧାରେ ଡୁବାଅ ଯେବେ ବିଶ୍ୱ,
ଅମର ରସ ପ୍ରଣତ ନିଅ କି ଦେବ ଶର୍ବ ନିଃସ୍ୱ ।

# ରବୀନ୍ଦ୍ର-ଅର୍ଚ୍ଚନା

ହର୍ଷ-ଦୋଳା ସ୍ପନ୍ଦନରେ
ଶୁଭିଲା ଯାର ମନ୍ତ୍ର ତାନ
ଲୁପ୍ତ ନିଶା ହେଲଣି ଏବେ
ସୁପ୍ତଧରା ଜାଗରେ ଜାଗ
କର୍ମ-ପଥେ ଧର୍ମରଥେ
ମର୍ମେ ମର୍ମେ ଭରରେ ତାନ
'ସତ୍ୟଶିବ ସୁନ୍ଦର' ଯେ
ଗାଅରେ ତାର ପ୍ରେମର ଗାନ
ନିଖିଳ ଜାନେ ବାଣ୍ଟିଲା ଯାର
ବ୍ରାହ୍ମ ବେଳେ ବ୍ରହ୍ମକଥା
ବିଶ୍ୱଗୁରୁ ଚରଣ ତଳେ
ନମ୍ର ଅଛି ନିଖିଳ ମଥା

ରବୀନ୍ଦ୍ର-ଅର୍ଚ୍ଚନା

ଲେଖନୀ ଯାର ଶକ୍ତି ଦେଲା
            ଅରୂପର ସେ ମଞ୍ଜୁ ଛବି
ଅରୂପେ ଦେଲ କାନ୍ତିଅଭା
            ସ୍ରଷ୍ଟା ତୁମେ ଧନ୍ୟ କବି ।
ସାଗର ତାଳେ ସମୀର ତାନେ
            ମୁକ୍ତପକ୍ଷୀ ବଂଶୀତାନେ
ଫୁଲର ହସେ ନିଖିଳ ଭାଷା
            ବୁଝିଲ ଯେବେ ପ୍ରାଣେ ପ୍ରାଣେ
କାବ୍ୟ ଛନ୍ଦେ ଦେଲ ହେ ପଥ
            ବୁଝିଲ ଭବ ନିଖିଳ ବ୍ୟଥା
ଭକ୍ତ ଭବ ଚରଣ ତଳେ
            ନମ୍ର ଅଛି ନିଖିଳ ମଥା ।

ଲେଖନୀ ମୁନୁଁ ଝରିଲା ଯା'ର
            ଏକ ଜାତିର ରୁଦ୍ଧ ଭାଷା
ହୃଦୟେ ଯା'ର ପ୍ରାଚ୍ୟ କୋଳେ
            ଖେଳିଲା ଯୁଗ-ଉଷାର ଆଶା
ମନ୍ତ୍ରର ଯା' ମାଭୈଃ ନାଦ
            ଝଙ୍କି ଦେଲା ତରୁଣ ବକ୍ଷ
ସାମ୍ୟ ମୈତ୍ରୀ ମନ୍ତ୍ରେ ଯା'ର
            ଏ ଜାତି ତା'ର ଲୋଡ଼ିଲା ଲକ୍ଷ୍ୟ

ବନ୍ଦନା

ଅଜେଜେ ତବ ଏ ଜାତ ବନ୍ଦେ
ଗଗନ-ତୋଳେ ଚନ୍ଦ୍ର ଯଥା
ଭାରତ ରବ ବିଶ୍ୱରବ
ଚରଣେ ନମ୍ର ବିଶ୍ୱମଥା ।

ବିଶ୍ୱପ୍ରେମୀ ବିଶ୍ୱସେବୀ
ବିଶ୍ୱଗୁରୁ ବନ୍ଧୁ ତବ
ଅସ୍ତ୍ର ତବ ନାହିଁ ତ କେବେ
ତୁମେ ତ ଶର ଧାପ୍ତରଜ
ମୃତ୍ୟୁର ସେ ତୋପାନ ଝଞ୍ଜା
ମୃଦ୍ଗର ଅସେ ଗଲଣି ଗୁଳି
ପୂର୍ଣ୍ଣରବ ଅଟଳକ ଝର
ବିଶ୍ୱଶିରେ ଦଅ ହେ ଢାଳ
କି ଦେବ ପୂଜା ମର୍ତ୍ତ୍ୟ-ଶିଶୁ
ତୁମର ପଦେ ଯୋଗ୍ୟ ଯଥା
କେବଳରେ ନୟନ-ଝରେ
ଭକ୍ତିଭରେ ନମ୍ର ମଥା ।



# ଶେଷ ଯାତ୍ରୀ

ଯାତ୍ରୀ !

ଅବସାନ ଜୀବନର ଶେଷ ଝଙ୍କରଣି,
ହେ ନିର୍ଯ୍ୟାତନ ଭରା ଜୀବନ ପାଥେୟ,
ମରଣକୁ କରିଗଲ ଏକମାତ୍ର ସାଥୀ ।

ସହସ୍ର ହୃଦ ସଙ୍ଗେ ସେ ସଇତେ
ତମର ମିଳନ
ଏ ମାଟିର ଶିଶୁପ୍ରାଣେ ଦେଲ ତମେ
ମୁକ୍ତିର ସ୍ପନ୍ଦନ
ତୃଣ-ମୂଳେଁ ଫାଶିକାଠେ
ଲେଖିଲ ହେ
ମୂକତର ନୀରବ କାହାଣୀ
କୋଟି ବୁକ୍ ତଳେ ନାଚେ
ତମର ସେ
ତୂଲିଶେଷେ ଅନ୍ତିମ ଗୃହାଣୀ

ଇଙ୍ଗିତବା

ଶୋଣିତ ସହସ୍ର କରୁଁ ପ୍ରେମ-ପୁଷ୍ପାଞ୍ଜଳି,
ଫୁଟାଇଛନ୍ତି ଅନ୍ଧ ଘନ ଦାସତ୍ୱ ତମିସ୍ରା
ହେ ଶହୀଦ ତବ ଅସ୍ତ୍ରବଳ ।
ହେ ଆଲୋକ ଯାତ୍ରି
ତମ ଯୋଗୁଁ ଅବସାନ ଶେଷ ଝଡ଼ରାତି ।

ବିଜୟ-ନିଶାଣ ତଳେ
ଏ ଜାତିର ମୁକତ-ଅର୍ଚ୍ଚନା
ଦେଖିବ ଅମୃତ-ପଂଥ
ତୃପ୍ତ ହେବ ଅତୃପ୍ତ ବାସନା
ସହସ୍ର ମନ୍ଦାର ଏଇ ମଶାଣିର ଅଙ୍କେ
ମାଟି ସଙ୍ଗେ ମାଟି ସତ ପାଲଟିଛି କାୟା
ଆଲୋକର ପଥେ ତବ, ଯେ ଆତ୍ମା ଅଗ୍ରଣୀ
ଭକ୍ତ କି ପାରିବ ତାକୁ ଏ ମାଟିର ମାୟା ?
ଏ ସ୍ୱପ୍ନ ପ୍ରାନ୍ତେ ତମେ
ତୋଳିଛ ଯେ ଆଲୋକର ସ୍ତମ୍ଭ
କଢ଼ାଏ ସରଣୀ ଅଙ୍କି
ସହସ୍ର ପଥିକେ,
ଅନ୍ଧକାରେ ପଡ଼ି ଭଲ ଆଲୋକିତ ସର୍ଗ ।
ନୀରବ ଇଙ୍ଗିତ ତବ ନୀରବ ଗୁହାଣି
ଏ ଜାତିର ସୁପ୍ତ ପ୍ରାଣ କରନ୍ତି ଜାଗ୍ରତ
ଉଷାର ତରଙ୍ଗ ତମେ ବଞ୍ଚାଇଛ ଦେଶ
ବାଜେ ଏବେ ମୁକ୍ତି-ରବ ବାଜଣା ସ୍ୱାଗତ ।

# ପ୍ରେମିକ ଓମାର

ଓମାର ଖାୟାମ, ଓମାର ଖାୟାମ,
ଧନ୍ୟ ତୁମର ଅମର ନାମ,
ଧରଣୀର କାନେ ତମର୍ କଥା
ବାଜୁଛି; ନଇଁଛି ମରଣ-ମଥା
ସରାବ ପିଅଲା ହାତେ
ରସିକା ବଧୂର ସାଥେ
ତରୁ-ତଳେ ବସି ଗାଇଲ ଯେ ଗାନ
ପୀରତି-ମଦର ବୋଳା
ହଜାର ବରଷ ତଳ ମଣିଷକୁ
ଚକିତେ ଫିଙ୍ଗୁଛେ ଡୋଳା
କି ଗୀତ ଗାଉଛୁ କହ
କର୍ଣ୍ଣ ନୟନ ଏକକର ଦେଖେ
ଓମାର ତମର ଛବି ।

ଭର୍ଗ ତତା

ଧର୍ମଧ୍ୱଜୀର ଅଙ୍ଗ ଦୋହାକୁ
ଦେଉ ନ ଥିଲ ତ ଦାନ
ଦ୍ରାକ୍ଷା ବଟୁର ବଧୂର ଅଧରୁ
ଚୁଲୁଭସ ମଧୁପାନ

ତଟିନୀ ପୁଳନେ ବସି
ପ୍ରେୟସୀର ପାଶେ ହସି
ଗାଉଥିଲ ନବ ପ୍ରେମର ଭବତା
ପ୍ରେମର ରହସ୍ୟ-ଗାନ
ତୁଚ୍ଛ ମଣିଛ ତହୁଁ ଉତମ ଭବ
ସୁଖତାନ ଧନମାନ ।

ସ୍ୱର୍ଗ ନରକ ଏକହୁଁ ସ୍ରଷ୍ଟା
ପୁଣ୍ୟ ପାପର ଏକହୁଁ କର୍ତ୍ତା
ସେହି ଯେ ମୂର୍ତ୍ତିମାନ
ନିରେଖିଛ ତୁମେ ସ୍ଫୂର୍ତ୍ତି ନୟନେ
ଶାଶ୍ୱତ ଭଗବାନ ।
କହିଲ, "ହେ ଭଗବାନ,
ଦଗ୍ଧ ପ୍ରାଣର କ୍ଷମା ନିଅ ପୁଣି
କର ତାକୁ କ୍ଷମାଦାନ ।"

'ଅତୀତ' ସେହିତ ଯାଇଛି ଗୁଲି
'ଭବିଷ୍ୟ' ତା'ଲଗି ଭାବନା ଗାଲି

'ଇଧୁନା'ର ଭଲ୍ ପ୍ରଜା
ଉଡ଼ାଇ ପ୍ରେମର ଧ୍ୱଜା
ପିଅଲ ଭରକ୍ଷ *'ସାକୀ'
ପୀରତି-ମୁଗ୍ଧ ଅଙ୍ଗ
ପିଇଲ ସରାବ ପୀରତି ମଦର
ଝଙ୍କାରେ ବହଳ ସଙ୍ଗ !
ନ ଭୁଲିବ ଏଇ ଚରମ ମିନତି
ଥିବ ଗୋ ମାନସେ ରଙ୍ଗ ।

ଗୋଲାପୀ ଚରଣ ଗୁଲବ ଉପରୁ
ସବୁଜ ଘାସେ ମୋ କବର ପରେ
ଢାଳିବ ଓଲଟ ସରାବ ପିଅଲି
ମୃତ୍ୟୁ ନୟନେ ଗୁନ୍ଥିବ ଥରେ
ସେ ଦନ ଉଠିବି ନବ ଜୀବନରେ ଚେଇଁ
ଉମର ପ୍ରେମର ମାତାଲ ସଙ୍ଗୀତେ
ଛନ୍ଦ ମିଳାଇ ଦେଇ

ଜଗତେ ତୁମର ଗୋଲାପ ଫୁଟିଛି
ମାତାଲ ପଟୁଷ ବିଜ୍ଞରେ ବସିଛି
ଓମାର ଖାୟାମ, ଓମାର ଖାୟାମ,
ଧନ୍ୟ ପ୍ରେମିକ ଅମର ନାମ ।





* ସାକୀ—ମଦ୍ୟ-ପରିବେଷିକା

# ଗୃହଦନ ଭୋଗିଲା

ଗୃହଦନ ଭୋଗିଲା
ପେଟେ ଭାତ ନାହିଁ ଦାନା
ଅଣ୍ଟ ମୁଣ୍ଡ ଶୁଖିଲା
ଅଣ୍ଟେ ଝରକ ଭାତ ପୋଷେ ପୋଷେ ଗୃହିଲ
ହାତ ଧରି ଅଗେ ଗୃଲେ ଟିକି ଝିଅ ବଜଲ
ପାଦେ ପଡ଼ିଲେ ଥକି ପଡ଼ି ବପେ ଦଣ୍ଡେ ଢଣ୍ଡ଼ଏ
ଚିତ୍ରି ଗର୍ଭ ଠାଲେ ବନ୍ଧା ଚୂଡ଼ା ଲୋଟ ପୁଣ୍ଡଏ
"ଖାଅ ଲୋ ଦର୍ଶଟି ମା' ଚିନ୍ତା ଛାଡ଼ି ଫିଟାଇ
ହାଡ଼ୀରେ ବିଧାତା ପଢ଼େ ଯାହା ଥାଉ ଘଟାଇ
ଭାଲି ସକାଳରୁ ହେଲା ଅଜ ପୁଣି ସକାଳ
ଭାତ ଦାନ ଛଳେ ଖାଇଥିଲୁ ଗଣ୍ଡେ ପଖାଳ ।
ସୁନାର ଲଡ଼ାଟି ମୋର ପଣ୍ଡିଲୁଣୀ ଝାଙ୍କିଲା
ଦର୍ଶଟି ପାଟିରେ ଦେଲ ଢୋକେ ଚିଇ ବାଉଳୀ ।"
ପାଟି ଖୋଲି ଅଠା ଅଠା ଘଟେ ଉଠେ ପଞ୍ଜରା
ମିଶି ଯାଏ ପେଟ ପିଠି ନଇଁ ପଡ଼ି ବଜିଲା
ଗୃହ ଦନ ଭୋଗିଲା ।

ଗୃହଧନ ଦେଖିଲ

"ବାବୁ ହେ, ଗୃହଧନ ଦେଖିଲ
ମନ୍ଦର ଚୋରାଣି ଦଉ
ଉପରର ଝରିଲ ।

ଝାଉଁ ଝାଉଁ କାନମୁଣ୍ଡ ଅଉ ନାହିଁ ସାହସ,
ଷାଠିଏ ବରଷ ବୁଢ଼ା ଉଣ୍ଡଲାଣି ଫାଙ୍କାସ,
ନଅ ବରଷର ମୋର ଝିଅ ମାଆ ଛେଉଣ୍ଡ,
ଗୃହ ନ ପାରବ ବାବୁ ଅଉ ଏକ ପହଣ୍ଡ,
ଜହ୍ନିଣିକା ଅସିଲାଣି ପେଟମସ୍ତ ବେମାର,
ଅଉ ନ ପାରିବ ବାବୁ ଦଣ୍ଡେ ହେଲେ ସମ୍ଭାଳି,
'ବାପା ଲୋ' ମଲ୍ ଏଥର ମୋର କାଳ ସରିଲ"
ଷାଠିଏ ବରଷ ବୁଢ଼ା ଅଖି ଖୋଷି ପଡ଼ିଲ
ଗୃହଧନ ଦେଖିଲ
ଗୃହଧନ ଦେଖିଲ
କେଲଅସି ରଡ ରଡ
ସଞ୍ଜବାଅ ବହିଲ ।

ଜହ୍ନଗଲେ ପଲ୍ ପଲ୍ କେତେ ପରୀ ରଚେଇ
ଗୋରୁ ଫେଲ୍ ଗୃହଗଲେ କାଠେ ଟୁଲି ଜଗେଇ
ଗାଆଁ ମୁଣ୍ଡ ପଡ଼ିଥିବେ ଝଙ୍କାଡ଼ର ତଳରେ
ଅଖି ଖୋଷି ପଡ଼ିଅଛି ବୁଢ଼ା ଶେଷ ନିଦରେ

ଇଙ୍ଗିତ

ଛୁଞ୍ଚ ପରେ ଢଳିଅଛୁ ଦର୍ପଣ ତା' ମୁହଁଟି
ମୁକ୍ତା ଥୋପାଟି ପରି ଏକ ଝୋପା ଲହୁଟି
ଝାଉଁଳା ଗୋଲାପ ଭଳି ସତେ ଝୋପା ତାହାର
ରଙ୍ଗ ମୁହଁ ସଞ୍ଜବେଳେ, ଶେଷ ଝୋପା ଅଶିର
କଥବଣେ ଫୁଟେଇ ଫୁଅ ସଞ୍ଜଘଣ୍ଟା ବାଜିଲା
ଭୈରବୀଙ୍କର ଦେଉଳରେ ଶେଷ ପୂଜା ସରିଲା,

ବ୍ରଜମୋହନ ମହାନ୍ତି ।



# ଆବାହନ

ଦାନା ମୁଠେ ନାହିଁ          ପେଟରେ ଯାହାର
ମଶାଣି ଭୂଇଁକୁ ଠାରଇ ଅଖି
ଭାତମୁଠା ଲାଗି          ହାତପାତ ଗୁହେଁ
ମଟଣେକୁ ଦେବେ ବଖାଇ ସାକ୍ଷୀ ।

ଖସ୍ର ଭବଷାଟରେ          ଭଜନା ନାହିଁ ଦେହେ
ଭୃକୁ ଟୂପ ଡାଲି ରଚଇ ତପ
ଅଖିର ତାତିରେ          ଲୁହ ଟାଳି ତ'ଳି
ମରଣ-ଗାୟତ୍ରୀ କରଇ ଜପ ।

ଦେଶ ମଣ୍ଡଳର          ଶିକାର ଦେହାଙ୍କୁ
ଜୀଅନ୍ତା ପିଶାଚ ଛୁଇଁଛୁ ଯାକୁ
ଦେଇ ଅଧମସ୍ତ          ଜନତା ଗୁଲର
ତୋର ଅବାହନ ସଜାଇବାକୁ ।

କଙ୍କାଳସାର ଜନତା-ଦୁଆରେ
ଦୁର୍ଗେ, ସତେ କି ଅସିଛ ଧାଇଁ ?
ଘୃତ-ଲଡୁ ଥାଳ ବଳି ଦେଉଅଛୁ
ତୋର ଶତଚଣ୍ଡୀ ବାହ୍ନନା ପାଇଁ ।

ତ୍ରିମଙ୍କର ଏକ ନୟନ ଜଳରେ
ହୃଦୟ ତୋହର ଥଲେ ଯେବେ
କଂକାଳ ସାର ଜନତା କୁହାଟ
କାନେ ତୋର ଶୁଭେ ନାହିଁ କି କେବେ ?

ଶୁଣ ଅନ୍ଧ ବାରେ ଶୁଣ ଅନ୍ଧ ବାରେ
ଜନନୀ କୋମଳ ହୃଦୟ ତୁହି
ପାଷାଣୀ ସାଜନା ପାଷାଣୀ ସାଜନା
କୋଟି ଶିଶୁ କେତେ ମଲାଣି ଭୁଇଁ ।

ଯେତେ ଗୋ ଦୁର୍ଗେ । ଲୋଡ଼ିଲ ଅନ୍ଧ
ଦେନ ନୟନର ଢାଳନ୍ତୁ ଲୁହ
ଦୁର୍ଗେ ଗୋ ଅନ୍ଧ ଦୁର୍ଗତ ହବ
ସେହି ଲାତେ ତବ ଚରଣଧୂଳ ।

## ତର୍ପଣ

ଗୃହୁଁ ଗୃହୁଁ ଗଲ ନଅ ଦିନ ବିତ
ସ୍ତପାନ୍ତୁ ଅପେ ଅଙ୍କ ତ ଦଶ
ଏଇପରି ଯିବ ମାସ ମାସ ବିତ
ବରଷକୁ ଯିବ ବିତ ବରଷ ।

ଦିନ ମାସ ବର୍ଷ ଦୂରତା ବଢାନେ
ତୋଠାରୁ ଦୂର କି ପାରିବ କରି
କାଳ ବ୍ୟବଧାନ ଯେତେ ବେଶୀ ହେବ
ତେତେ ମୁଁ ନିକଟ ହେବି ତୋହର ।

କାଳ ଦରଥରେ ସ୍ୱର୍ଣ୍ଣ-ଯଉବନ
ଜର୍ଣ୍ଣଜସ ଦ୍ରୁତ ଡୋଲରେ ବସି
ଯିବ ଖେଳି ଖେଳି କେତେ ସାଥୀ ସଙ୍ଗେ :
ମନପୂରିଣିଅ ସଂଗୀତେ ରସି ।

## ସ୍ୱର୍ଗ କଥା

ଯେଉଁଠି ଦେଖିବ ତୋଜ ବେ ମୋହର
କର ପାତ ମୋତେ ଡାକୁଛୁ କୋଳେ
କେଜ ସାଥୀସଙ୍ଗେ ନ ଯିବଟି ଭୁଲ୍
ଡେଇଁ ପଡ଼ିବ ତୋ ସ୍ନେହର କୋଳେ ।

ହସି ହସି କୋଳେ ଘେନି ମୋତେ ତୁଇ
ଦେଖାଇବୁ ସେଇ ଅମରଧାମ
ସେ ଅଚିହ୍ନା ଦେଶେ ଚିହ୍ନି ନ ପାରିବ
ଜାଣି ନ ପାରିବି ତାହାର ନାମ ।

ଗୋଟି ଗୋଟି ମୋତେ ଚିହ୍ନାଇ ଦେବୁ ତୁ
ସେ ଦେଶର ବଣ ପାହାଡ଼ ନଈ
ସେ ଦେଶ ବଗିଚୁ ଫୁଲ ଫଳଭରା
ସମ୍ରାଟ ସେ ରାଜ୍ୟ କିଏ ଅଟଇ ?

ଅଛି କି ସେ ଦେଶେ ରଜା ପ୍ରଜା ଭେଦ
ରଜା ପ୍ରଜା ଭଲ ଲଗେ ନା ତହିଁ,
ଘଟେ ନା ସେ ଦେଶେ ରୋଗ ବା ମଡ଼କ
ସେ ସବୁରେ ତୁଇ ରହିଛୁ ଯହିଁ ?

ସବୁବେ କହନ୍ତି ସରଗେ ଲଭିଛୁ
ସଦା ମହାନନ୍ଦ ଅମୃତ ଖେଳ
ନାହିଁ ରାଗ, ଦ୍ୱେଷ, ଦୁଃଖ ପ୍ରତାରଣା
ଅଛି ସତ୍ୟ, ସୁଖ, ପୀରତି ମେଳ ।

ପରତେ ନ ଯାଏ ମରତ ଶିଶୁ ମୁଁ
ତୋରଠୁଁ କେବଳ ଶୁଣିବ ଯେବେ,
ତୋ କଥାଟି ମୁହିଁ ବେଦସାର ମଣେ
ଅବଶ୍ୟ ସତ ମୁଁ ମଣିବ ତେବେ ।

ସେ ସ୍ୱର୍ଗ ପୁର ରମଣୀଙ୍କ ଆଗେ
ଦେଖାଇବୁ ମୋତେ କୋଳରେ ଘେନି
କହିବୁ, "ଭଗିନି, ଏଇ ପୁଅ ପାଇଁ
ଝୁରୁଥିଲି ପ୍ରାଣ ଜନ୍ମ ବେଳି ।

ପରତେ ଯା'ଙ୍କରେ ଝୁରି ଝୁରି ପସ୍ତ
କଣ୍ଟା ଦେଇଥିଲି ତନୁ ମୋହର
ଦେଶ ଦଶ କାମେ ନିତି ବୀରପଣେ
କାରାଗାରେ ଯେବେ ଗଲି ସେଥର ।

ଜନନୀ-ପରାଣ ଝରଣା ପରାୟ
ସନ୍ତାନ ହେତୁରେ ଧାଏଁ ସତତ
ଝୁରିଲି ପରାଣେ, ଜାଣିଲେ ହେଁ ପୁଅ
କାରାବନ୍ଦୀ, ଧର ମଙ୍ଗଳ ପଥ ।

ସେ ତ ଯାଇଥିବ କାହିଁ ଦେଖି ମୋତେ
ତେଣୁ ଆସିଲି ମୁଁ ତାହାକୁ ପୁଣି
ଧନ୍ୟ ସିଂହାସନେ କାଳର କଟାଳେ
ଏ ପୁଅ କାହାଣୀ କାନେ ନ ଶୁଣି ।

ଉର୍ଦ୍ଧ ଉଡ଼ା

କି କରିବି ଭଲ, କି ଥିଲ ମୋ ଗୃହ
ମର୍ତ୍ତ୍ୟ-ସାଥୀ ମେଳ ଅସିଲି ଭୁଲି
ଚାହିଁଥିଲି ପୁଅ ଆସ ପଛ ହୋଇ
ଏଇ ସର୍ଗ୍ୟ ଧନେ ଅସିବ ବୁ ଲି" ।

ସେ ସ୍ୱର୍ଗ ଫଳ ଫୁଲବଣ ଦେଖେ
ମିଠା ମିଠା ଚାଖ ଥିବୁ ସାଇତ
'କେବେ ପୁଅ ମୋର ଅସିବ ମୋ ପାଖେ'
;ଏହା ଭାବି ମୋର ପଥ ଚାହିଁଛି ?
ବସିଥିବୁ ଯେବେ ଦେଖିଲେ ମୋତେ ତୁ
ଗୋଇଦେବୁ ବୋଉ କୋଳରେ ଧରି
ସରଗେ ଅସିବ ମରତର ସ୍ମୃତି
ମର୍ତ୍ତ୍ୟଥିଲି ସ୍ୱର୍ଗ ମାଅ ମୋହର ।

କହନ୍ତି ଜଗତେ, ସ୍ୱର୍ଗ ସୁଖଠାରୁ
ଜନନୀ ସେନେହ ପଡ଼ଇ ବଳି
ତୁହି ମୁହିଁ ବୋଉ ସ୍ୱର୍ଗେ ଥିଲେ ବେନି
କେଉଁଟି ବଡ଼ ବା ପାରିବ କଳି ?
ଦ୍ୱିଗୁଣ ଅନନ୍ଦ ସୁରଶିଶୁ ସଙ୍ଗେ
ଡାଲିମାର ମୁହିଁ ଖେଳିବି ହସି
ଦେଖୁଥିବୁ ବୋଉ ସୁରନାରୀ ମେଳେ
ମୋର କଉତୁକ ଅନନ୍ଦେ ବସି ।

# ବିଶ୍ୱ-ବିଜେତା

ବିଜୟ-ମୁକୁଟ ସତ ନାହିଁ ତବ ଶିରେ,
ଅଗଣିତର ବକ୍ଷରକ୍ତେ ଯାହାଛି ଲିଖିତ,
ଅନ୍ତିମ ଲୋତକ ଜଳେ ଯାହାର ମାର୍ଜନା,
ବିଜିତର ରକ୍ତବିନ୍ଦୁ ରଞ୍ଜିନାହିଁ ଭଲେ,
ତୀକ୍ଷ୍ଣ ଅସି ମୁନେ ଭେଦି ମାନବର ବକ୍ଷ
ଉର୍ଦ୍ଧ୍ୱ ମୁକ୍ତ କରିନାହିଁ ସ୍ୱର୍ଗପଥ ତୋଳି ।

ସବୁଜ ସୁନ୍ଦରଧରା ନିସର୍ଗ ବିଧାନ
ସୃଜି ନାହିଁ ଭସ୍ମହୋଳା ବିକଟ ମଶାଣି ।

ସହସ୍ର ଅବଳା କଣ୍ଠେ ଦସ୍ୟୁ ଅଭିନାଦ,
ଦେଇ ନାହିଁ ବୈଧବ୍ୟର ଶର ନିର୍ଯ୍ୟାତନ,
ଜାଣି ନାହିଁ ରଜନୀତି-କୁଟ-ପ୍ରତାରଣା,
ହିଂସା ବର୍ବରତା ଯେଉଁ ବାସେଚିତ ଭବ

## ବଙ୍ଗିତା

ସେ ଯଂଶ-ପିଞ୍ଜରର ତୁଚ୍ଛ, ଫିଙ୍ଗି ଅଛ ଦୂରେ,
ଅର୍ଦ୍ଧ ଲଗ୍ନ, ଜରାଜୀର୍ଣ୍ଣ, ଲଗ୍ନ ପଦଗୃହ
ଜଗତ ବନ୍ଧୁର ଅଙ୍କ
ତଟେ ସ୍ୱପ୍ନ ଜନ୍ମୀ ।
ହସି ହସି ବଇଶୀକୁ ନେଇଅଛ କୋଳେ
ଭଦ୍ରର କୃପାଣ ମୁଖେ ପଠାଇଛ ଗୃହ,
ଅତ୍ୟାଚାର ଲାଞ୍ଛନା କରିଛ ବରଣ,
ଫିଙ୍ଗିଛ ଲକ୍ଷ୍ମୀର ଦେହ ପୁଷ୍ପମାଳ ସମ,
ଅବରୁଦ୍ଧ,
ଯଥା ବନ୍ଦ ପିଞ୍ଜରରେ ବିହଙ୍ଗୀ ।
ବିଶ୍ୱ ଦୁଃଖେ ଭାଙ୍ଗ ଜୀବନ ନିରବ ଅନ୍ତର
ବିଶ୍ୱପଥ ପଦେ ଲେଖି କରୁଣାର ଭାଷା —
ସବୁଜ ସୁନ୍ଦର ଧରା ରାଜ୍ୟ ଚିରକାଳ,
ମୁକ୍ତ ଶାନ୍ତ ପ୍ରଗତର ବିଜୟ କେତନ
ଉଡ଼ୁ ଫରଫର ବିଶ୍ୱେ,
ଚିରକାଳ ଲାଗି,
ପଶୁତ୍ୱର ଅବସାନ ହେଉ ତାର ସାଥେ ।
ସତ୍ୟ ଦୟା ସାରଲ୍ୟର ମୂର୍ତ୍ତିମାନ ଯେବେ,
ଶାନ୍ତିର ଅମୃତ ସଦା ଭର୍ତ୍ତି ତବ ପ୍ରାଣେ,
କିବା ଲୋଡ଼ା ଜଡ଼ ଅସ୍ତ୍ର ଆତ୍ମରକ୍ଷା ଲାଗି,
ରକ୍ତ ସ୍ନାନ ସତ, ତମେ ହେ ବିଶ୍ୱବିଜେତା ।



# ପ୍ରେମର ବିଜୟ

ପ୍ରେମମୟ !

ନୁହେ ତ କଠୋର ଫାଶ ହୋଇଛନ୍ତି ମୁଁ ଛନ୍ଦ,
ନୁହେଁ ତ ପଥରକାସ୍ୱ ବିନ୍ଦୁ ମୁହିଁ ବନ୍ଦୀ,
ଅନୁଭବେ ପ୍ରାଣେ ସତ ନ ଦେଖେ ନୟନ
କଠୋରୁ କଠୋରତର ମୃଦୁ ମୃଦୁତମ,
ତବ ପ୍ରେମ କାରା ତବ ଅଚ୍ଛେଦ୍ୟ ବନ୍ଧନ
ଭାଙ୍ଗ ରଖିଅଛୁ ପ୍ରିୟ ନାଶିଲ ଜୀବନ ।

ପ୍ରେମେ ବନ୍ଧା ରବିଶଶୀ ଜ୍ୟୋତିଷ୍କମଣ୍ଡଳ,
ପ୍ରେମେ ତବ ଊର୍ମିଛନ୍ଦେ ନାଚେ ସିନ୍ଧୁଜଳ,
ପ୍ରେମେ ବରଷେ ଜଳଦ, ବହେ ସ୍ରୋତସ୍ୱତୀ,
ପ୍ରେମେ ହସଇ ଆନନ୍ଦେ ଶସା ବସୁମତୀ,
ପ୍ରେମେ ଫୁଲ ଫୁଟେ ବୃନ୍ତେ ଗୁଞ୍ଜେ ମଧୁକର,
ପ୍ରେମେ ଛୁଟେ ସିନ୍ଧୁପଥେ ଗିରିକନ୍ୟା ଝର,

## ବର୍ଜିତା

ତପନ ପ୍ରଚଣ୍ଡ ତେଜ ଜ୍ୱଳନକୁ ଜିଣି,
ତାର ବକ୍ଷେ ତବ ପ୍ରେମ ଛବି ସସେଷଜଣୀ,
ଗୁଣ୍ଠି ହସେ ଚନ୍ଦ୍ରରଶ୍ମି ଜରେ ଅଳ୍ପଘନ
ପ୍ରେମେ ପଣେ ଅନଳକୁ ଶୀତଳ ଚନ୍ଦନ,
ଦୂର ଅନ୍ତରୀକ୍ଷେ ସେ ତ ରହିଅଛି ଗୂଢ଼,
କମଳିନୀ ମଣେ ରବି ଫୁଟେ ତାର ପାଇଁ ।

କଠିନ କର୍କଶ ପ୍ରେମେ କୋମଳ ମଧୁର,
ଜ୍ୟୋତ୍ସ୍ନା ସୁଶୀତଳ ଲାଗେ, ପାଶ, ପ୍ରେମେ ଦୂର,
ଲୁଟାଏ ଧାର୍ମିକ ଦମ୍ଭ ଶୃଙ୍ଖଳ ଛୁଟର,
ଭରଇ, ଫସାଏ ପ୍ରେମ ଶୁଷ୍କ ଜଳଧର,
ପ୍ରେମେ ହସେ ପ୍ରେମେ କାନ୍ଦେ ବିଶ୍ୱ ଜୀବଚୟ,
ଗ୍ରୈଧବେ ନାଚଇ ତବ ପ୍ରେମ-ରୂପମୟ ।

ଅନାଦି ଅନନ୍ତ ପ୍ରେମ ପ୍ରେମହିଁ ଶାଶ୍ୱତ,
ସତ୍ୟ, ପ୍ରେମର ବିଜୟ ଏ ବିଶ୍ୱଜଗତ,
ପ୍ରେମେ ସୃଷ୍ଟି ପ୍ରେମେ ସ୍ଥିତି ପ୍ରେମର ବିଲୟ ।
ଚିରକାଳ ଗାଏ ବିଶ୍ୱ ପ୍ରେମର ବିଜୟ ।



# ସନ୍ଧ୍ୟାରେ ବ୍ୟଥା

**ଅଗୋ ସଂଧ୍ୟା !**

ତମର ଏ ରଙ୍ଗ ଛବି ଦେଖି
ନୟନ ବୃହ୍ମାଣୀ କିଆଁ ହୁଏ ଗୋ ଉଦାସ,
ମନଫୁଲଣିଅ ମୋର ଅବେଗ ସଙ୍ଗିଣୀ
କମିଆସେ ଧୀର ଧୀର ପାଇ ସେ ଅଭ୍ରାସ,
ପ୍ରାଣେ ଫୁଟେ ଅଜାଣତର ମଟୁର କାହାଣୀ
ଢ- ଚଳଶଚେଫ ନାରେ କା'ଉଦାସ ଅଖି
ତମର ଏ ରଙ୍ଗ ଛବି ଦେଖି ।

**ଅଗୋ ସଂଧ୍ୟା !**

ତମର ଏ କାକଳି-ସଂଗୀତ
କାନେ ଅଜଣାରେ ଅଣେ କାହାର ମୂର୍ଚ୍ଛନା,
ନିଭୃତ କନ୍ଦରେ ବାଜେ ବ୍ୟଥାର ସ୍ପନ୍ଦ,
ବେଦନାର ମୂର୍ତ୍ତି ମୋତେ କରେ ଗୋ ଭର୍ତ୍ସନା,
ତାଳେ ବେଦନାର ଅଶ୍ରୁ ଯାହା ଥିଲା ସଞ୍ଚି,
ଅବଶ କରଇ ପ୍ରାଣ ସେ ସୁର ଇଙ୍ଗିତ,
ତମର ଏ କାକଳି-ସଂଗୀତ ।

# ଗୋଧୂଳି-ସ୍ମୃତି

ଗୋଧୂଳିର ତୀରେ ଯେବେ ଅସ୍ତଗାମୀ ରବି !
କି କହୁଥିଲ ତୁମ ଆଗେ ତୁମେ କି ନ ବୁଝି,
ଗୋଧୂଳିର ଅବସାନେ କହୁ ତ କି ଛବି ?
ଚିହ୍ନ ଯାଅ ଶସ୍ୟ ଲତା ପାଦପ ସବୁଙ୍କି ।

ପ୍ରାଣର କି ବ୍ୟଥା ଭରି ନୁହେଁ ଏ ସରାଗ ?
ମେଲିଦେଇ ହୃଦୟର ସବୁ ରଙ୍ଗ ପୋଛି,
ମିଶାଇ କରୁଣା-ପ୍ରେମ କନକ-ପରାଗ,
ଲେଖି କିସ ଚିତ୍ର ଲେଖା କହ ରବି ପୋଛି !

ସେଇ ଚିତ୍ର ଲେଖିଥିଲି ମୁହିଁ ଯେତେ ଯତନେ,
ତୁମେ ଏକା ଥିଲ ସାକ୍ଷୀ ନ ଥିଲେ ତ କେହୁ,
କଳ କଳ କଲ୍ଲୋଳିନୀ, ତାହାର ପୁଲିନେ
ପ୍ରାଣର ବେଦନା ଛନ୍ଦ ତା ସଙ୍ଗେ ମିଳାଇ ।

## ଗୋଧୂଳି ସ୍ମୃତି

ଗୁରେଷ୍ଟି ନୟନୁ ଯେବେ ଝାଳୁଥିଲ ବାର
ତୁମର ରଙ୍ଗିନ ଭରେ ଦେଲ ତ ସାନ୍ତ୍ୱନା
ତଲସ୍ତ ଯେବେ ସେ  ସଜ ଲପନ-ଶେଫାଳି
ସାକ୍ଷୀ ଥିଲ ଟେବେ ଅଜ୍ଞ ନ ଭର ବଞ୍ଚନା ।

ଅଛି ଏ ତନ୍ନିମା ଓୀରେ ସେ ଛବ ସୁମର
ଉଦାସ ନୟନେ ନଟ୍ଟ ବଜନେ ବ୍ୟଥିତା
ଏଇ ଅସ୍ତ ଛବ ଗୁର୍ହ୍ମ ଅଣୁଥିଲେ ଫେର
ଶୁଣାଇବ ଭାଭାଲୀରେ ଅଶାର ଭବତା ।



## ସ୍ୱପ୍ନ-ସଙ୍ଗିନୀ

ପଛେ ଯେବେ ଆସି କହିଲ କେତେ କଥା
ମଧୁବୋଲା ପରଶେ ହରିଲ ମୋର ବ୍ୟଥା
କେତେ ମଧୁର ସ୍ମୃତି ପୂଜା ଅରଘ-ଭାର
ଅଣିଥିଲ ଗୋ ଯେବେ ନୟନ କୋଣେ ଭରି
ଭରି ଅଞ୍ଜଳି ପାତ
ମେନଡଭରି ଅଖି
ଢାଳିଲ ପୂଜାଫୁଲ ଅର୍ଘ୍ୟ ସ୍ୱପନସାଥି ।

ଅନ୍ତର ଖୋଲି ପ୍ରିୟେ କହିଲ ତମେ ଯାହା
ସୁବର୍ଣ୍ଣ ଲିପି ଦେଇ ରଖିଲି ଲେଖି ତାହା
ହୃଦ୍-ଫଳକେ ମୋର ଝଲସେ ବାରବାର
ଯେତେ ପୋଛିଲେ କାହିଁ ନ ଲିଭେ ଲିପିଗାର
ସ୍ୱପନ ଗନ୍ଧ ଗୁଳି
ଗୋପନ ସୁଧା ଢାଳି
କି ମଦିରା ପାନେ ଗୋ ମତାଇ ଗଲ ଗୁଳି ।

## ସ୍ୱପ୍ନ-ସଙ୍ଗିନୀ

ପ୍ରଥମ ବେଦନାଭରା ଗାଇଲ ଯେ ରାଗିଣୀ
ଜୀବନ ସୁଅଧାରେ ଖୋଜିଛି ସେ ଜହ୍ନରାଣି
ମାନସ-ତରୀ ମୋର ନାଚନ୍ତ ଦୋଳାୟିତ
ତୁମେ ମୋ ନାଉରୀ ହୋଇ ଚଳ ଗୋ ମୋ ବୋଇତ
ଅସିଲ ଚଲି ଚୁଲି
ବ୍ୟଥା-ଅଶ୍ରୁ ଢାଳି
ଚଳିଲ ଭୁଲେ ଶତ ଗୃହଁ ସ୍ୱପନବାଳି ।

ସ୍ୱପନ-ଭୋଳୁ ଯେବେ ଅଇଲା ଜାଗରଣ
ଅଣିଲା ଛାର ସ୍ମୃତି ଜଳାଇ ଏ ପରାଣ
ସ୍ୱପନରୂପସୀ ଗୋ ତୁମକୁ ଯେଣି ସାଥେ
ଅଟିଲ ନାହିଁ କଥା କହିଲ ମୁହିଁ ଯେତେ
ନ ଦେଲ ଅଧର
ଲୁଚିଗଲ କି ପର
ସ୍ୱପନ-ଅନ୍ତରାଳେ ଜଗାଇ ସ୍ମୃତି-ଧାର ।

ମନକୁ ମନ ଯେବେ ପାରଇ ଏତେ ଭଣ୍ଡି
ଜଡ଼ ଶରୀର ଫେଲି ଯାଏ ଗୋ ଯେବେ ଉଡ଼ି,
ସ୍ୱପନପୁରେ ଛାର ରଚଇ କୁଞ୍ଜବନ
ଜଡ଼ ଚେତନ ମଧ୍ୟେ ଅଛି କି ବ୍ୟବଧାନ ।
ଜାଗଇ ଜଡ଼ ଅଙ୍ଗି
ଜାଗର ଛଟା ଦେଖି,
ମାନସ-କୁଞ୍ଜେ ଜାହିଁ ଲୁଚେ ମାନସ-ସଖି ।

## ଇଙ୍ଗିତ।

ତୁମେ ତ ଯାଅ ଲୁଚ ଦ୍ରୁତ ବଢ଼ଇ ଖେଳ
ଅତୀତ ବନ୍ଧୁତ୍ୱ, ହସ ପୀରତି ମେଳ
ଉଦାସ ଅଖି ଦୁଇ ନୀରବେ ରହେ ଗୃହିଁ
ଶୂନ୍ୟ ଗଗନ ପଥେ ଏକା ଭ୍ରମର ପାଇଁ,
ମାନସ ପୁରେ ଛପି
ଥାଅ ଗୋ ଯେବେ ସଖି
ସ୍ୱପନେ ଲୁଚପାଅ ମିଳାଇ ଗୃହ ଅଖି ।



## ମାଧବିକା

କହୁ ବୋଲ ଅଳି କି କୁହୁକ ବୋଲା
ବାଜିଲା ଅମୀୟ ରାଗିଣୀ
ସହକାରକୁଞ୍ଜେ କିଏ ବଜାଇଲା
ନୂଆ ସିତାରରେ ବାଜଣୀ ?

ଶୁଣିଛି ତ ସେଇ ଚିରସାଥୀଟି
ନିତି ଅହରହ ବାଜୁଛି
କିଏ ସେ ଗୋ ସେହୁ କାକଳି-ତାନରେ
ନୂଆ ତାରେ ତାନ ଭରୁଛି ?

ହଜାଇ ଦେଲି ମୋ ସକଳ ଚେତନା
ପଲକେ ପାଲଟେ କାୟା
ମାୟାପୁରୀର ଭଙ୍ଗି ନେଇଲାଣି
ପଢ଼ିବଦଳିଲା ମୋ କାୟା ।

ଇଙ୍ଗିତକା

ଅତୀତର କେତେ ମଞ୍ଜୁଳ ଛବି
ଅଙ୍କି ଅଛେ ମୋର ନାଚେ
ଅତୀତର କାର ବେଦନାର ଗୀତ—
ଝରଣା ମୋ କାନେ ଝରଇ ।

ଭରଜତେ ମୋର ବୁକୁତଳେ ଅଛି
କା’ ଲାଗି ଗୁପତ ବେଦନା
ମାନସ-କୁଟୀରେ ଗୁହ୍ମଁ ରହୁଛି କେ
କେତେବସନ୍ତ ଲପନା ।



# ଆଷାଢ଼େ କୂଜନ

ବସନ୍ତ ନାହିଁ ଆଜି ଦୂରେ ଗୋ ଗଲାଦୂରେ
ବସନ୍ତ-ବନ୍ଧୁ କଥା ବ୍ୟଥିତ ଜୀର୍ଣ୍ଣସ୍ବରେ
ପହିଲି ଆଷାଢ଼ର ବଜ୍ରଦ-ରଥ ଗୃହିଁ
ନ ଡାକ ଆଜି ତୋର ବଂଧୁ ଫେରିବ ନାହିଁ ।

ନବ ପଲ୍ଲବ ଦଳେ ଭରି ସବୁଜ ଧରି
ଦେଖି ହୁଅଇ ପ୍ରତେ ଆସିଲେ ବନ୍ଧୁ ପରି ।
ଆଷାଢ଼ ସାଜିଛନ୍ତି ଗୋ କୁହୁକ ମଧୁ ଛବି
ଭରମେ ବଂଧୁ ଭ୍ରାନ୍ତ ଶେଷେ କି ଯାଉ ଦୂରି ?

ନୁହେଁ ଗୋ ଜେବେ ନୁହେଁ ଏହ ତୋ ପ୍ରାଣବନ୍ଧୁ
ପ୍ରାବୃଟ ଯାଦୁକର ନୁହେଁ ତୋ ପ୍ରିୟ ମଧୁ,
ଛଳନାମୟ ତାର ସବୁଜ ରୂପ ଛଟା
ଦେଖ ଗୋ ନଭ-ପଥେ ବଜ୍ରଦ ଘନଘଟା ।

## ବଞ୍ଚିତା

ଛଳନର ଶବଦାଳ ଛପିଛି ପାରିବ କେତେବ ?
କୃତ୍ରିମ ଅବରଣ କେତେବ ଚେ ଢାଙ୍କେ ଚେଠବେ
ଶଠ ଷରଦା ଫେରି ଫୁଟି ଧଣଇ ଢାଙ୍ଗା
ନୁହେଁ ନିଃସ୍ୱର୍ଗ ସ୍ୱିସ୍ତ ଛଳନା ମିଥ୍ୟା ଯାହା ।

ରହୁଛ ସତ ସେଇ ସଙ୍ଗ ପଲ୍ଲବ ଦଳ
ବସନ୍ତ ବନ୍ଧୁ ପରି ଉନ୍ମ ଧରେଶ ସଙ୍ଗଳ
ଭାଙ୍ଗି ମଟୁମ୍ବ ସେଇ ମଟୁସୁରଭି ଛଟା
ଚଳଧରେ ଫକ୍କିଳ ଭଙ୍ଗ ମ ଘନଘଟା ।

ତନୁ ଲବଣ୍ୟ ଥାଉ ଅଧର ଛଳହସ
କଣ୍ଠ କି ପାରେ ପ୍ରାଣ କର ଛି ପାରିର ବଶ ?
ନାହିଁ ଯେତେବ ସୁରଭି ଭରା ସବୁଗମଟ୍
ଜାଣିଛି ମଟୁ ବନ୍ଧୁ ନୁହେଁ ତୋ ପ୍ରିୟ ମଟୁ ।

ଭବମେ ଭୁଲ ନାହିଁ ଉଦାସ ପ୍ରାଣେ ଥାଉ
ଜଗତ 'କୁହୁ' ଗୀତ, ଥାଉ ନଭର କୁହୁ
ଯା ଲାଗି କୁହୁ ଡାକ ନାଶିଲ ପ୍ରିୟ ମଟୁ,
ନ ଡାକ କୁହୁ ଯେବେ ନାହିଁ ତୋ ପ୍ରିୟବନ୍ଧୁ ।

ଯାହାର ପାଇଁ କୁହୁ ଏତେଟି ସ୍ୱୟଦାଅ
ସେ ତେବେ ଗଲ ଦୂରେ ଥଉ ତୁ ଡାକୁ କଥା ?
ଫେରିଲେ ବନ୍ଧୁ ତୋର କରବୁ ସମ୍ଭାଷଣ
"ତୁମ ଲଗି ମୋ ଡାକ ସାର ଗୋ ପ୍ରିୟଧନ !"

## ମାନସ-କୁଞ୍ଜରେ କୋଇଲୀ ଡାକେ

ମାନସ-କୁଞ୍ଜରେ କୋଇଲି ଡାକେ
ମାନସ-ରୂପସୀ ଗହଳ ଶାଖେ,
ଦୋଳରେ ଫୁଲ
ଶାଳୁକ ଭୁଲ
ହେଳେ ଡାକେ ପ୍ରିୟ ଆସ ହେ ଆସ
ଦେଖିବା ଅମର ପାରିଜାତ-ବାସ ।

ସନ୍ତପ-ଜଡ଼ତା ପାଉଛୁ ଶେଷ
ଶ୍ରବଣ-ରୂଢ଼ତା ନାହିଁ ଗୋ ଲେଶ,
ଗୋଧୂଳି-ବଣ
ରଙ୍ଗ ଛବି
ସଙ୍କୁଳ-ବୋଳା ମଳୟବାତେ
ଫଗୁ ହୋଇ ଖେଳ ମୋହର ସାଥେ ।

କୁଟିଳ କଣ୍ଟକ ଦୁନିଆ ପରେ
ରକ୍ତର ଛଟା ଯହିଁ ଗୋ ଜଳେ,
ଶାନ୍ତି କାହିଁ ?
ପାଇବ ନାହିଁ
ରୁକ୍ଷ ମରୁରେ ଶୁଷ୍କ ଧଣ,
ଭ୍ରାନ୍ତ ହୁଅ ନା ଅବ ଗୋ ଅବ ।

ଶାନ୍ତିର ପିଅ ଶୀତଳ ଝର
ଦଗ୍ଧ ଜୀବନ ଶୀତଳ କର,
କୁଞ୍ଜବନ
ମୁଗ୍ଧ କର
ପବନ୍ତ ଉହ ଗୋ ବକ୍ଷେରେ ଗ୍ରହି
ସୁଷମା-ସାଗରେ ମଗ୍ନ ଥାଇ ।

ଏଇ ବନ ଫୁଲେ ରଚିବ ମାଳା
ଉପହାର ଦେବ କାନନ-ବାଳା,
ମାନସୀ-ବଧୂ
ସ୍ୱରଗ-ମଧୁ
ଅଧରେ ମୋହର ଢାଳିଛୁ ବସ
ପିଇ ପିଯୂଷ ହୁଅ ଅମର ।

ମାନସ-କୁଞ୍ଜରେ କୋଇଲି ଡାକେ

•

ପଞ୍ଚମ ତାନେ କୋଇଲି ଡ'କେ
ତାନ ମିଳାଇବା ତାହାର ସାଥେ,
"ପ୍ରିୟ ଓଗା ପ୍ରିୟ
ପ୍ରେମର ଧନ"
କ୍ଷୟ-ଗୀତିକା କଣ୍ଠୁ ତୋଳ
ଖେଳ ଗୋ ମୋର ସଙ୍ଗେ ଦୋଳ ।



## ସ୍ୱର୍ଗ-ଭିକ୍ଷୁ

ଲୋଡ଼େ ନା ମୁଁ ଅଳସିର ନନ୍ଦନ ଧାମରେ,
ଲୋଡ଼େ ନା ପୁଲକ ହେବା ଦେବେନ୍ଦ୍ର ଆସନେ ।

କୁବେର ଅଦ୍ଭୁତ ପଦେ ନାହିଁ ମୋ ବାଞ୍ଛା ।
ନାହିଁ ଯେବେ ସ୍ୱର୍ଗର ନିଃସର୍ଗ-ଇଚ୍ଛା ।

ଲୋଡ଼େ ନା ଗୋଲାପ-ଶେଯେ ଲୋଟାଇବା ଅଙ୍ଗ
ପଥର ଭିକାରୀ ହେବା ଦୈନ୍ୟ ଭର ସଙ୍ଗ ।

ଯହିଁ ଛୁଟେ ସ୍ନେହ ପ୍ରୀତି ବିମଳ ଝରଣା
ତହିଁ ମୁଁ ଛୁଟିବି ପାନ୍ଥ, ମେଣ୍ଟିବ ବାସନା ।

ସ୍ୱର୍ଗ-ପୀରତି ଆଶା-ପଥେ ମୁହିଁ ଭିକ୍ଷୁ,
ସ୍ୱର୍ଗ-ପୀରତି ଧର୍ମେ ଆଜୀବନ ଲକ୍ଷ୍ୟ ।



## ବିଦାୟ-ଚମ୍ପା

ବିଦାୟ ବେଳ ଜାଣି ଦେଖା ନ ଦେଲ ଯେବେ
ଏଇ ଚମ୍ପକ ଗୋଟି ଜୁଡ଼ାହାର କି ଥିବେ ?
ସଙ୍ଗ ଚମ୍ପାଫୁଲଟି ସଜଳ ନୟନରେ
ଅନ୍ତର ଭାଷା ଭବ ଦେଲ କି ମଞ୍ଜନରେ ?

ବିଦାୟ ପ୍ରାଣେ ମୁଁ ଆସିଲି ଗୃହକୁ ଏକା
ଲୁଚିଲି ଅନ୍ତରାଳେ ପାଇଲି ନାହିଁ ଦେଖା,
ତୋଳିଲି ଫୁଲଟିକୁ ବ୍ୟଥା-ଅବଶ କରେ
ଧୋଇଲି ଅଙ୍ଗ ତାର ନୟନ ଅଶ୍ରୁ କଣେ ।

## ଉପଢୌକା

ଦେଖେ ତୋ ରମ୍ଭା ପ୍ରୀତି ସ୍ପନ୍ଦ ନ ଥିବ ଯଦେ,
ଏତେ ଆଦର ମୋର କାହିଁକି ଏ ଫୁଲରେ ?
ସୁରଭି କର ତବ ଲଭିଛି ବୋଲି ସିନା
ନୟନ-ଅଶ୍ରୁ ମୂଲ୍ୟେ ଏ ଫୁଲ ମୋର କିଣା ।

ଝାଉଁଳି ଅସିଲାଣି ଭ୍ରମର ଅଙ୍ଗ ପର
ବିରହ-ତାପେ ସର୍ବ ଯିବାଣି ଭ୍ରମେ ସର,
ମଞ୍ଜନେ ଛନ୍ଦେ ସତେ ତମର ପ୍ରାଣକଥା
ନୀରବ ଭାଷା ତାର ମରମେ ଅଙ୍କେ ବ୍ୟଥା ।

ଝାଉଁଳି ଯାଏ ଫୁଲ ମଉଳିଯିବ ତନୁ
ସରସ ସଙ୍ଗ ତାର ଝୁରି ନ ଯାଏ ମନୁ
ହୃଦୟ-ତରୁ ଶାଖେ ତା' ହସ ଢ଼ଳ ଢ଼ଳ
ଫୁଟିଛି ଯେତେବେ ଯତନେ ନ ଲୋଟେ ଧରାତଳ ।

ସ୍ୱର୍ଗ ଫୁଲ ସେ ତ ମିଶେ କି ମାଟି ସଙ୍ଗେ ?
ମାଟିର ତନୁ ସିନା ମିଳାଏ ମାଟି ଅଙ୍ଗେ,
ସ୍ୱର୍ଗ-ଫୁଲ ଶୂନ୍ୟେ ଯାଏ ସ୍ୱରଗ-ପଥେ
ଚାରୁ ମଳୟ ବୋଳା ପ୍ରାଣ-ପୁଷ୍ପକରଥେ ।

ବେଳ ସ୍ୱଚ୍ଛ ଝରଣା ମିଳଇ ଯେବେ ସଖି !
ତା' ମଧ୍ୟେ ଶଭେଦ ଗୋ କେ କାହିଁ ପାରେ ରଖି ?
ମନରେ ତୁମ ମୋର ଏ ସସ୍ୱପ୍ନ-ମିଳନ
ସ୍ୱରଗପୁରେ ତାର ନ ହୋଇବ ଖଣ୍ଡନ ।

କହ ଚମ୍ପକ ତୁହୁଁ କି କହୁଥିଲ ବନ୍ଧୁ,
ତୋ ହାତେ ଦେଇଥିବ ତାର ବାରତା-ମଧୁ
ପରଶିବାକୁ ମୋତେ ପାଲଟୁ ଢଳରେ ମୂକ,
କହ ପଢଏ କଥା ନ ଅଣ ପ୍ରାଣେ ଦୁଃଖ ।

କହିଲ ନାହିଁ ପଦେ ହାୟ ତୁଇ ନିର୍ମମ
ଫୁଲଟି ହୋଇ ପୁଣି କଠିନ ଶିଳାସମ
ଶିଳା କଠିନ ହେଲେ ନ ଲାଗେ ପ୍ରାଣେ ବ୍ୟଥା,
ବ୍ୟଥା ଲାଗଇ ଦେଖି 'ଫୁଲ-ପାଷାଣ' କଥା ।

ହାୟ ମୁଁ ରେ ନିବୋଧ ନ ବୁଝେଁ ଫୁଲଭାଷା !
ବୁଝିବି ବନ୍ଧୁଭାଷା କରି କି ପାରେ ଆଶା ?
ଫୁଲରୁ ପ୍ରାଣ ତାର ଅଧା କେତେ ନରମ,
ମୁହିଁ କି ନିଜେ ହେବେ କଠିନ ଶିଳା ସମ ?

## ଇଙ୍ଗିତା

ମନର ଭୂଷା ଯେବେ ତନୁରୁ ଫୁଟେ ଜଣା
ମନ-ରୂପିରେ ତନୁ ନିରଖେ ପଶ୍ଚ ଟଣା
ଫାଙ୍କିଲା ତନୁ ତୋର କହଇ ତାର କଥା
ସତ ଚମ୍ପକ ତୁମେ ବୁଝ ମୋ ବନ୍ଧୁ-ବ୍ୟଥା ।

ଥରକ ଘରଷଣରେ ବୁଝିଲ ତାର ପ୍ରାଣ
ପ୍ରିୟ ମୁଁ ହୋଇ ତାର ହୋଇଲ କି ପାଷାଣ ?
ଫୁଲ ବୁଝଇ ସିନା ଫୁଲପ୍ରାଣ-ବେଦନା
ଏକ ଉପାଦାନରେ ବେଣିର ସରଜନା ।

ଅଳିକି ନ ବୁଝଇ ଫୁଲ-ପ୍ରାଣ ସରାଗ ?
ଅଳିଫୁଲର ପରା ନିଃସର୍ଗ ଅନୁରାଗ
ଫୁଲରୁ ଫୁଲ କେବେ ଯାହା ନ କରେ ଆଶା
ଅଳି ମେଣ୍ଟାଏ ସିନା ଫୁଲ ପ୍ରାଣ-ପିପାସା ।

ତେଣୁ ଚମ୍ପକ ତୋର ମୋର ଏ ବ୍ୟବଧାନ
ବୁଝିଛ ତାର ମୋର ଅଙ୍ଗ ତୋର ପରଶ ।



## ସରାଗ ଜଗତେ ସାର

ଯେ ଯାକୁ ମନରେ ପ୍ରାଣ ପ୍ରିୟତର
ସେ ଯେବେ ମଣଇ ପର
ସାର ହୁଏ ସିନା ନିରଜନେ ଢାଳ
ଅର୍ଦ୍ଧ-ଭୋଜନେ ଅଶ୍ରୁଝର ।

ପ୍ରିୟ ହୋଇ ଯେତେବେଁ ଯେଷ୍ଟ ନ କହଇ
ପରାଣ-ଗୋପନ କଥା
ସାର ହୁଏ ସିନା ବୁକୁପରେ ଗୁପା
ଗୁରୁ ପାଷାଣର ବ୍ୟଥା ।

ପ୍ରିୟ ଯେବେଁ ପର ମଣଇ ତା'ଠାରୁ
ଜଗତେ କେ ଅଛୁ ଦୁଃଖୀ !
ପ୍ରିୟର ସରାଗେ ସରାଗୀ ଯେ ନର
ହେଲେ ସିନା ଏକା ସୁଖୀ ।



# ନିଶୀଥ

କିଏ ତୁମେ ବସି
ମନ୍ତ୍ରର-ଜପ-ତାପସୀ ?
ଘନ ନିଶୀଥର ସ୍ୱପ୍ନ-ପଥ-ଧାରେ
ମୂର୍ଚ୍ଛନା ଯାଅ ପରଣି ।

ଭେଦେ ସମୁଦ୍ରର ମନ୍ଦ୍ର ରାଗିଣୀ
ମୁଖରିତ ଶୂନ୍ୟ ଗଗନ-ବିଚରଣୀ

ସୁପ୍ତିର କୋଳେ ଜାଗ୍ରତ ବାଣୀ
କିଏ ତୁମେ ଯାଅ ବରଷି
କଳ୍ପନା ତୁମେ କହ କିଏ ଅଗୋ ତାପସି ?

## ଝିଙ୍କାର

ବନ୍ଦନ ବନ୍ଧୁର-ଦ୍ୱାରେ ଝଙ୍କାରେ ଝିଙ୍କାର
ବଜାଏ ବୀଣାଟି ତାର ସେ ଶର ଭିଖାରି
ନାହିଁ ତାର ଉଷାଙ୍କୁର
ଗୃହେ ନାହିଁ ଉଷା
ଲୋଡ଼େ ନାହିଁ ଧନ ମାନ
ସ୍ୱର୍ଣ୍ଣ ଅଟ୍ଟାଳିକା

ନ ବଡ଼ ଜାଣିଥେ କରେ ଚାତ୍କାର, ସମ୍ମାନ
କଂଠେ ଭରି ତାର ଜୟଗାନ
କଏ ସେ ଦେବତା
ଭଗ୍ନ ଅଙ୍କ ମୋର ନୀରବତା
ସଜାଇବ କ୍ଷୁଦ୍ର ତନ୍ତ୍ରୀ
ତୋଳିବ ଝଙ୍କାର
ଝଙ୍କାର ଛନ୍ଦେ ତବ
ଚଞ୍ଚଳ ସଂସାର ।

ନ ଲୋଡ଼ଇ ଧନମାନ ଜୟ ତବ
ଗାଇଯିବ ଗୀତି
ଉଷା ନ ଲୋଡ଼ିବ କିନ୍ତୁ
ସାଜିବ ଭିଖାରି ।

# ପୂଜାରିଣୀ

ଗୋଧୂଳିର ଅବସାନ, ନୀଳ ନଭ ଅଙ୍ଗେ
ଯହିଁ ତହିଁ ବହୁରଙ୍ଗ ଗୋଲାପୀ ଛୁଟିଲା ।
ଛପି ଛପି ଜଳେ ମାରେ ସଂଧ୍ୟାର ତାରକା
ଅଦୂର ପାଦପଗଣ ଅନ୍ତରାଳେ ରଙ୍ଗେ ।

ଚଳଚଳ ତରଙ୍ଗିଣୀ ଗାଏ ସନ୍ଧ୍ୟାଗୀତ
ପତ୍ରର ମର୍ମରେ ବାଏ ସମୀର ମୃଦଙ୍ଗ ।
ଧ୍ୟାନ ରତେ ନୀଳକଣ୍ଠ ସମ ନୀଳଶୃଙ୍ଗ
ଝିଙ୍କି ତାନେ ସନ୍ଧ୍ୟା ନିଜେ ଅରମ୍ଭେ ଆରତି ।

ପ୍ରକୃତି-ବନ୍ଧୁକା କି ସେ ନବ ସୁକୁମାରୀ
ଯୌବନ ଉତ୍ପରଣ ଢୋଳ ନାହିଁ ଅଙ୍ଗ,
ଛଳ ଛଳ ହାସ୍ୟ ଶୁଭ୍ର ପ୍ରେମର ତରଙ୍ଗ
ସନ୍ଧ୍ୟା-ପୂଜାରିଣୀ ପରା ସନ୍ଧ୍ୟା-ଦୀପ ଧରେ ।

ମାଟିର ପ୍ରଦୀପ ଘେନି ସାଜଇ ଆରତି
ଦେବତାଙ୍କୁ ଦେଖି ଘଣ୍ଟ-ଘଣ୍ଟି ଦେଉଳେ
ଶିରେ ତୋଳି ତାଳେ ତାଳେ ନାଚ ପ୍ରେମଭୋଳେ
ଗାଏ ସନ୍ଧ୍ୟା-ପୂଜାରିଣୀ ସନ୍ଧ୍ୟାର ଆରତି !



# ନୀରବ ମିନତି

ସ୍ତବ୍ଧ ଗଗନ ସ୍ତବ୍ଧ ପବନ
ସ୍ତବ୍ଧ ପାଦପଦଳ,
ବେଦନାର ରୂପ ସଜାଏ ଧରଣୀ
ବୃକ୍ଷ ଚରଣତଳ ।

ଖଞ୍ଜନେ ଡାଳରେ ଅକୁଳ ପରାଣେ
ନିଦାଘେ ରଚଇ ତପ,
ତରୁ-ଶାଖେ ବସି କ୍ଷୁଦ୍ର ପକ୍ଷୀଟି
କା ନାମ କରଇ ଜପ ?

ଜନପଦ ଭରି ଉଠଇ ତାହାର
କରୁଣ-କାତର-ଭାଷା,
ସେ ଗୀତ ରେ ତାର ଅନ୍ତରୁ ଫୁଟେ
ଅଶାପ୍ୱିନ ଜପ-ଅଣା ।

ରଚଇ ଧ୍ୱଅନ ବଜନତା ଭୋଳେ
ନିବେଦେ ଦେବତା ପାଶେ,
ଧନ୍ୟ କଲ୍ୟାଣେ କଲ୍ୟାଣ ମମ
ପୂଜା ମମ ଏହୁ ଅଟଣ ।

ଇଙ୍ଗିତକା

ଣାନ୍ତକର ହେ ବଦାଘଚାଢର
ଦର୍ପ ଅକୁଳ ବନ୍ଧୁ,
ଧନମାନ ବାସ ଲୋଡ଼େ ନାହିଁ କିଛୁ
ହୃଏ ପଟେଛ ଶର ନିଃସ୍ପୃ ।

ସେଇ ଛପ ମମ ଅନ୍ତରେ ଜାଗୁ
ସେଇ ମିନତିଟି ଭାର,
ଧରି କଲ୍ୟାଣେ କଲ୍ୟାଣ ମମ
ଏଇ ଭାବ ହେଉ ସାର ।

# ଭଲ ପାଇବାର ଲାଗି ଭଲପାଏ ଖାଲି

ଦେବତା ପଚାରେ—"ଭକ୍ତ, ନିତ ଲକ୍ଷ ଥାଳ
ପୂଜୁଛୁ ତ କହ ତୋର କିସ ମନୋରଥ ?
ଦେବତାର ଶ୍ରୀଚରଣେ ଅର୍ପି ପ୍ରେମାଞ୍ଜଳି
"ପ୍ରିୟ ତମ ତୁମେ ମୋର" ଉତ୍ତରଇ ଭକ୍ତ ।

"ଗୃହେଁ ନାହିଁ ଉଡ଼ାଇବ ବର୍ଣ୍ଣେ ବୈଜୟନ୍ତୀ
ଗୃହେଁ ନାହିଁ ଭରଉଅ ସୁବର୍ଣ୍ଣ-ଅଟ୍ଟାଳି
ପ୍ରେମ ବଦଳେ ଲୋଡ଼େ ନାହିଁ ସମ୍ମାନ ସମ୍ପଦ
ଭଲ ପାଇବାର ଲାଗି ଭଲ ପାଏ ଖାଲି ।



## ଶ୍ମଶାନ

ଜୀବନ-ମରଣ ସଙ୍ଗେ      ଯାଉ ଥିଲେ ନ
ଛୁଟାଇ ନଶ୍ୱର ଲୀଳା ·   ବିଶ୍ୱର ବନ୍ଧନ,
ଏଇ କି ପ୍ରଣୟ-ଯଜ୍ଞେ ପ୍ରଣୟୀ ଅହୁତି
ନୁହେଁ ଚିତା, ଏଇ ଦେବ ପ୍ରେମ ବିଭୂତି ।
ଏଇଠାରେ ଜୀବନର ସଫଳ ସଂଧାନ
କିଏ କହେ ତୁଚ୍ଛ କ୍ଷୁଦ୍ର ଛାର ଶମଶାନ !

ଜୀବନେ ମରଣ ଦିଏ ପ୍ରଗାଢ଼ ଚୁମ୍ବନ
ଧରଣୀର ବକ୍ଷେ ଏ ଯେ ପ୍ରେମ-ବୃନ୍ଦାବନ
ପାଏ ନବ ଯୌବନେ ଯେ ନୂତନ ଇଙ୍ଗିତ
ଅଙ୍ଗ ଗାଏ ମୃତ୍ୟୁ ଦେଇ ନୀରବ ସଙ୍ଗୀତ ।
ନାହିଁ ବନ୍ଧ ନାହିଁ ଛନ୍ଦ ଅନନ୍ତ ଚିତିକା
କେ କହେ ଶ୍ମଶାନ ? ମୁକ୍ତ ପ୍ରଣୟ-ବେଦିକା ।



## —ବେଲ ଛାଣି—

ବେଲ ଛାଣି ଫୁଟେ କୁଞ୍ଜେ ଅଫୁଟା ଫୁଲଟି
ଶୁଖିଲ ନଈଟି ସ୍ଥଳେ ଉଚ୍ଛୁଳେ କୂଳଟି ।

ବେଲ ଛାଣି ଅସେ ଜପା ଗୋଲାପୀ-ବସନା
ବେଲ ଛାଣି ଫୁଟେ ତାର ଗଗନେ ଚନ୍ଦ୍ରମା ।

ତେବେ ମୁଁ କିସଣ ବ୍ୟର୍ଥ ? ନ ଫୁଟେ ମୋ ଆଶା,
ହୃଦ୍‌ତଳେ ଛପି ରହୁ ଦିଏ ମୋତେ ତୃଷା,

‘ବେଲ ଛାଣି ଫୁଟିବ ତୋ ଜୀବନ-କମଳ
ଆଶାର ଉଦ୍ୟାନେ କିଛି ନୁହଇ ବିଫଳ ।’



# ସ୍ତବ-ସଙ୍ଗୀତ

( ୧ )

ଦୁଃଖୀର ଅନନ୍ତ ଧନ  ପ୍ରେମୀଙ୍କର ଆଶା-ଆଲୋ
ପିପାସୁ-ସୁଧା-କଳସୀ  ତପସ୍ୱୀର ଜପମାଳା
ଜ୍ଞାନୀର ଜ୍ଞାନଭଣ୍ଡାର
କଳ୍ପନାର ପାରାବାର

ଆରତ-ବିପଦ-ବନ୍ଧୁ  ଜିଜ୍ଞାସୁ ଉତ୍ତର ଧାରା
ଅଭିଳାଷୀ ଅଭିଳାଷ  ତୁମେ ଭରା ବିଶ୍ୱାସ
ଜ୍ଞାନକୁଞ୍ଜେ ତବ ବାସ
ଦର୍ଶନେ ଯା ଅଭିଳାଷ

ସ୍ନିଗ୍ଧ ପ୍ରିୟତର ତବ  କଣ୍ଠେ ତାଙ୍କୁ କର ମାଳା
ସେ ତବ ଅଧିର ଲକ୍ଷ  ତାଂ ନେତ୍ରୁ ଯେ ଅଶ୍ରୁଧାରା ।

( ୨ )

ଦେବତା

ପାଷାଣ ପାଲଟି ଯାଅ ନା
ଅନ୍ତରତମ ତୁମେ ଯେବେ ମମ
ନ ବୁଝ କି ମମ ବେଦନା ।
ପାଷାଣ ପାଲଟି ଯାଅ ନା
ଉଷା-ପ୍ରଦୋଷରେ ନୟନ-ସଲିଳେ
ଚରଣ କଲି ମୁଁ ମାର୍ଜଣା ।

ନିତେ ଜାଳି ମୋର ବେଦନାର ଧୂପେ
କଲି ମୁଁ ଆରତି ରଚନା
ହୃଦ-ସରସୀର ସରାଗ ସରୋଜ
ଢାଳି କଲି ତୋତେ ସାଧନା ।
ଏତକ ଦାରୁଣ ହୁଅ ନା
ଉପହାର ଏତ ଦଅ ନା
ଅପରାଧ ଯେବେ କରିଅଛି କେବେ
ଲାଞ୍ଛିତ ଅଜ୍ଞ କର ନା,
ନିଜ ଗୁଣେ କ୍ଷମା କର ଗୋ ଦେବତା
ପରମଣି ଠେଲି ଦଅ ନା.
ପାଷାଣ ପାଲଟି ଯାଅ ନା ।

( ୩ )

ହେ ଦେବତା, ହେ ଦେବତା ।
ଜୀବନେ ମରଣେ ତମେ ସ ଥୀ
ହୃଦୟ-ଅସନ ଅଛି ପାତ
ତମ ପୂଜା ଲାଗି ଦିବାରାତି ।

ଥାପିବାକୁ ପ୍ରାଣେ ତବ ଚରଣ ରେଣୁ
ଶୁଣିବାକୁ ପ୍ରିୟ ତବ ମୋହନବେଣୁ
ଅଶାୟୀ ବହୁଛି ମୁହିଁ
ଜନମ ଜନମ ଗୁହୁଁ
ମିଳତ ନ ଶୁଣ ଚିର ସାଥୀ
ହୃଦୟ ଅସନ ଅଛି ପାତ ।

ଅସ ଗୋ ଅସ ପ୍ରିୟ, ଅସ ଗୋ ଅସ
ପୂରଣ କର ମୋର ଏ ଅଭିଳାଷ
ଲୋଡ଼େ ନାହିଁ ଧନମାନ
ନାଚ ମୋ ଜୀବନ-ଧନ
ନଟବର ମଞ୍ଜୁଳକାନ୍ତି
ଜୀବନେ ମରଣେ ତମେ ସାଥୀ ।

( ୪ )

ତବ ପୂଜା ମୋ ଜୀବନ-କନ୍ଦରେ
ତବ କମଳ-ଆସନ ଅନ୍ତରେ
ପ୍ରେମଫୁଲେ ତବ ପୀରତି
ବ୍ୟଥା-ଧୂପେ ତବ ଆରତି
ଜପ ତପ ଯେତେ ବାହାର ଭକତି
ଜାଗ ନୀରବ ମନ୍ତ୍ରେ
କମଳ-ଆସନ ଅନ୍ତରେ ।

( ୫ )

ପ୍ରଭୋ ।
ମିଳାଅ ସକଳ ସଙ୍ଗେ
ଅନ୍ତରେ ଯେତେ ଅହମିକା ଅଛି,
ଡୁବିଯାଉ ତବ ଅଙ୍ଗେ
ସର୍ବଦର୍ପ ମାନବଡ଼ିମା
ଯେତେକ ଅଛି ଏ ଜୀବନ-କାଳିମା
ଡୁବି ଯାଉ ତବ ଆଲୋକ-ଜୁଆରେ
ମୁକ୍ତ ଲହରୀ ଭଙ୍ଗେ,
ବିଶ୍ୱ-ପୀରତି ଉଦାର ମନ୍ତ୍ର
ଜଗାଅ ଛନ୍ଦେ ଛନ୍ଦେ,
ମିଳାଅ ସକଳ ସଙ୍ଗେ ।

## — ସାଂଧ୍ୟ ଗୀତ—

ସଂଧ୍ୟା ହେଲା ସଂଧ୍ୟା ହେଲା
ବାରୁଣୀ-ତୀରେ ଅସ୍ତମେଳା
ବନର ପକ୍ଷୀ ଛନ୍ଦ ଦେଲା
ସଂଧ୍ୟା ହେଲା, ସଂଧ୍ୟା ହେଲା

ଗଗନେ ଫୁଟିଲେ ତାରା
ରଜତ ହୀରକ ଝରା
ସଜାଇ ଅଭେଦ ଥାଳା
ଜଳାଇ ପ୍ରଦୀପମାଳା
ଗଗନେ ଅମରବାଳା
ଡୋଳିଲେ ପ୍ରେମ ଉଚ୍ଛ୍ୱାସ

ଗାଇଲେ ଧନ୍ୟ ସ୍ରଷ୍ଟା ।
ଧନ୍ୟ ହେ ତୁମ୍ଭ ଲୀଳା !
ସ୍ୱର୍ଗେ ଜାଗରଣ
ପରତେ ସଂଧ୍ୟା ହେଲା ।

### ସାଂଧ୍ୟ ଗୀତ

ଯେବେ ଗୋ ସଂଧ୍ୟା ଆସେ
ତେବେ ମୋ ଭଗ୍ନାକାଶେ
ଜୀବନ କର୍ମପାରେ
ମିଳିବ ତୁମ୍ଭ ଦ୍ୱାରେ
ପଗ୍ରିଣ ପଞ୍ଚବଟୀ
ସାଜିବ ସଂଧ୍ୟାବତି
ଗାଇବି, "ପ୍ରଭୋ ମୋର
ସରିଲା କର୍ମଖେଳା
ଚରଣେ ଅଶ୍ରା ଦଅ
ଏବେ ଗୋ ସଂଧ୍ୟା ହେଲା ।"



## ସୁଦୂର ବଂଶୀ

ସଂଧ୍ୟା ଅସେ  ଜୀବନ ପଥେ
ଅନେକ ଯାଏ ଦୂରେ
ସୁଦୂର ଦେଶେ  ବଂଶୀବାଜେ
ବେଦନାଭରା ସ୍ବରେ ।

ଏଇ ଯେ ତଣେ
ବଳୟେ ଘିଣେ
ଅସୀମ ପାରାବାର
ଫିର ମୁଁ କାହୁଁ
ତରଣୀ ନାହୁଁ
କେଣେ ଗୋ କର୍ଣ୍ଣଧାର ?

## ସୁଦୂର ବଂଶୀ

ଚପଳା ହାସେ
ଈଶାନପ୍ରାସେ
ବାଦଲ ଧଏ ବେଶ,

ଅସର ଝଡ଼
ଦେଲଣି ବଢ଼
ମୂର୍ଦ୍ଧରେ ସନା ଏକା ।

ଅକୂଳେ ଭାବେ କେ ଗୋ ଅଛ
ଡଙ୍ଗ ଲଗାଅ କୂଳେ,

କିଏ ଗୋ ତମେ ବଂଶୀ ବାଅ
ଦୂରେ—ବହୁ ଦୂରେ ?

ବର୍ଷି ମୂର୍ଚ୍ଛଁ କେବଳ ମମ
ପଶିଣ ଅନ୍ତଃପୁରେ ।



# ସୁଦୂର ବଂଶୀ

ସଂଧ୍ୟା ଅସେ          ଜୀବନ ପଥେ
ଅନେକ ଯାଏ ଦୂରେ
ସୁଦୂର ଦେଶେ          ବଂଶୀବାଜେ
ବେଦନାଭରା ସ୍ୱରେ ।

ଏଇ ଯେ ଘଣେ
ବଳୟେ ମିଶେ
ଅସୀମ ପାରାବାର
ପିବ ମୁଁ କାହିଁ
ତରଣୀ ନାହିଁ
କେଣେ ଗୋ କର୍ଣ୍ଣଧାର ?

## ସୁଦୂର ବଂଶୀ

ଚପଳା ଛାଟେ
ଈଶାନକୋଣେ
ବାଦଲ ଧଏ ଦେଖା,

ଅସହ ଝଡ଼
ଦେଖଣି ବଡ଼
ମୁହଁରେ ସିନା ଏକା ।

ଅକୂଳେ ଡାକେ କେ ଗୋ ଅଛ
ଡଙ୍ଗି ଲଗାଅ କୂଳେ,

କିଏ ଗୋ ତମେ ବଂଶୀ ବାଅ
ଦୂରେ—ବହୁ ଦୂରେ ?

ବନ୍ଦୀ ମୁହଁ କେବଳ ମମ
ପରାଣ ଅନ୍ତଃପୁରେ ।



## ସିନ୍ଧୁପ୍ରତି

ଫେନିଳ ଚୂର୍ଣ୍ଣ ତୁମର ମୁକ୍ତା ଅଳଙ୍କାର
କରେ ଘେନି ଆସ କହେ ପ୍ରୀତି ଉପହାର ?
ବନ୍ଧୁ ପ୍ରତି ପ୍ରୀତି ମାଲ୍ୟ ଢୋଳି ଦେବା ପାଇଁ
ଆସୁଛ କି ଊର୍ମିଢାଳେ ହେ ଅସୀମ ! ଧାଇଁ ?

କହୁଯିବ ହୃଦୟର ମୁକ୍ତ ଅଭିଳାଷ
ଦେଇଯିବ ଛନ୍ଦେ ଛନ୍ଦେ ଅନ୍ତର ଉଚ୍ଛ୍ୱାସ

ଦୂରେ-ଦୂରେ ବହୁ ଦୂରେ ଶୂନ୍ୟ ନଭ ଅଙ୍ଗେ,
ମିଶି ଯାଇଅଛି ତୁମେ ଅହା କେତେ ରଙ୍ଗେ !
ଏପରି ବିସ୍ତୃତ ଥାଇ ନାହିଁ ତବ ଗର୍ବ,
ହେ ଅନନ୍ତ, ଅଳ୍ପଜ୍ଞାନ ! ଦେଖି ଅହଂଦମ୍ଭ
ମିଶି ଯାଇ ଶୂନ୍ୟ ନଭ-ନୀଳିମାରେ ତା'ର
ମିଳାଅ ନିଜତ୍ୱ ସିନ୍ଧୁ, ଅହା କି ଉଦାର !

ଉଦାରୁଁ ଉଦାରତର କେବଳ ଉଦାର
ନୁହ ତୁମେ ହେ ମୋ ପ୍ରିୟ ନୀଳ ପାରାବାର,
କମଳା-ଜନକ ତୁମେ ପୂର୍ଣ୍ଣ ରତ୍ନାକର
ଶୂନ୍ୟ ମହାଶୂନ୍ୟ ଦେଖ ନଭ ଦିଗମ୍ବର,
ନିଜର ଅସ୍ତିତ୍ୱ ଦିଅ ତା'ଚରଣେ ବଳି
ଏତ, ଅର୍ଦ୍ଧ ତ୍ୟାଗ, କାହୁଁ ଜଣେ ତୁମ ଭଳି ?

ଭୁଲିଯାଇ ଅହଙ୍କାର ବଡ଼ିମା ସକଳ
ବଳି ଦିଅ ହେ ମହାନ, ଶୂନ୍ୟ ପଦତଳ ।

ଗୁଣୀ ତମେ ରତ୍ନାକର ଜାଣ ଗୁଣାର୍ଜ୍ଜନ ।
ମିଶିଯାଅ ଶୂନ୍ୟାକାଶେ ଟେଣ୍ଡେ ମହାମନା ।
ଦିଗମ୍ବର ହେଲେ ନଭ କିବା ଯାଏ ତହିଁ ?
ପୂର୍ବେ ଝଣ୍ଟୁ ବିଶ୍ୱ-ମହାଶ୍ୱବ ଗଣି ଯହିଁ
ସେ ମହା ଯୋଗେଶ ପଦେ ନିଜକୁ ଅର୍ପଣ
କର କରୁଛ କି ସିନ୍ଧୁ ଦୂରେ ଏ ତର୍ପଣ ?
ବେଳାଭୂମେ ମୁଖରତ ତବ ଊର୍ମିଛନ୍ଦ
ତୋଳୁଛ କି ହେ ପଙ୍କାର । ସେ ଗାୟତ୍ରୀପଦ ?

ଜଣାଯାଅ ସୁଗମ୍ଭୀର ମହର୍ଷିର ସମ
ପ୍ରେମାମୃତ ଭରେ ଏଇ ଦୃଶ୍ୟ ଅନୁପମ

## ରଙ୍ଗି ଭଙ୍ଗା

ଅନ୍ତର ପାରେ ନା କରି ତୁମର କଳନା
କେଉଁ ଭାବେ କର ତୁମ ବିଶ୍ୱ-ଦେବାର୍ଚ୍ଚନ ?
ବନ୍ଧମୁକ୍ତ ପୂଜା ତବ ଜାଣିବାକୁ ନର
କ୍ଷମ ନୁହେଁ, ବନ୍ଧା ଯେଣୁ ପାଶରେ ବିଶ୍ୱର ।

ହେ ଉଦାର, ମହାସିନ୍ଧୁ ଦିଅ ଆଶୀର୍ବାଦ,
ଭୁଲି ଯାଉ ପ୍ରାଣ ମୋର ଦ୍ୱନ୍ଦ୍ୱ ତର୍କ-ବାଦ
ପ୍ରାଣେ ଖେଳୁ ପ୍ରେମୋଚ୍ଛ୍ୱାସ ତବ ଊର୍ମିସମ
ପ୍ରେମେ ନାଚି କରୁ ନିତ ବିଶ୍ୱ ଦେବାର୍ଚ୍ଚନ ।
ମହାନନ୍ଦେ କରୁ କଣ୍ଠ ତା'ର ଯଶଗାନ
ରହେ ପୁଣି ତବ ସମ ସୁଗମ୍ଭୀର ଧ୍ୟାନ
ଅହଂକାର ବଳ ଦେଇ ମିଶେ ବିଶ୍ୱପଦେ
ବିଶ୍ୱମୟୀ ଭାବେ ମଜ୍ଜି ଧୀରେ ମହାନନ୍ଦେ ।



# ଶିଳ୍ପର ଆତ୍ମଦର୍ଶନ

ନୀଳାର ଅବାଧଗତି ରୋଧି କାବ୍ୟ-ଛାୟା
ରେଖା ଅଦ୍ଭୁତ ସମ ଦେଲାଣି ଲେଶ ସ୍ର
ଅନ୍ଧକାର ପରିଚ୍ଛଦ୍ର ଅଲେଖ ଶଙ୍ଖସ୍ତ
ଅକ୍ଷୁଣ୍ଣ କ୍ରମାଙ୍କରେ ଦେବ ଦେଉଳ୍ପ
ଝଂକାରିତ ଝିଲ୍ଲିରବ
ମୁଖରିତ ସିନ୍ଧୁ-ସ୍ତବ
ସ୍ବପ୍ନଶୀଳ ବେଳାଭୂମି ଧୈବତ-କାନ୍ତାରେ
ଅସ୍ପଷ୍ଟ ଦୁଇଟି ମୂର୍ତ୍ତି ଲୁପ୍ତ— ଅନ୍ଧକାରେ ।

ଜଣେକ ପୁରୁଷ ଜଡ଼ ଶିଳା-ମୂର୍ତ୍ତି ସମ
ଚରଣେ ବନିତା ଏକ ଅପୂର୍ବ ଲାବଣ୍ୟ
ଅନ୍ଧକାରେ ଫୁଲ ଜଳେ ଦିବ୍ୟକାନ୍ତି ଧରି
ସ୍ବର୍ଗପୁର ଶିଶୁ କି ସେ ମର୍ତ୍ତ୍ୟ ଅବତରି
ସୃଷ୍ଟିର ରହସ୍ୟ ଖୋଲି
ଅପିଅଛି ପିବ ଗୃହି
ମର୍ତ୍ତ୍ୟର ଅପୂର୍ଣ୍ଣ କର୍ମ ସମ୍ଭାର ଦେଇଛି
ମର୍ତ୍ତ୍ୟରୁ ଛଡ଼ାଇ ଯେବେ ବଢ଼ନେ କେତେ ।

‘ଧର୍ମୁ’ ‘ଧର୍ମ୍ମ ମୋର’ ମାନ ଦେଇ ନା ପଦ
ବାଷ୍ପରୁଦ୍ଧ କଣ୍ଠଭାଷା କରୁଣ ଶବଦ
ମିଳାଇଲା ଜଳଧିର ଗୁରୁ ଘୋଷତଳେ
ପ୍ରତିବାକ୍ୟ ଶୁଣାଗଲା ବାଳକଣ୍ଠ ସ୍ୱରେ
“ଅମର ଏ ଗଉରବ
ତମେ ପିତା, ପୁଅ ତବ
ଥାଉ ମୁହିଁ ଏ କାତର—ବଦାନ୍ୟ, ବଦାନ୍ୟ
‘ବାରଣ ନଢେଇ ଦାସ୍ୟ କି ପୁଅରେ ଦାସ୍ୟ ।”

ଚଳେ ଏକମୁଖେ ଅଗ୍ରେ ଅସୀମ ନୀଳିମା
ତୀରେ ଉଭା ନଭସ୍ପୃଶୀ, ଧବଳ ସୀମା—
ଉତ୍ତୁଙ୍ଗ ଶୈଳ ସମ ଅଜବ କୋଣାର୍କ
ପାଷାଣୀ ଅହଲ୍ୟା ସମ ଉଠିଛି କା’ ପଦାଙ୍କ
ସ୍ୱର୍ଗର ପୁଷ୍ପକରଥେ
ଅମର ବାଳକ ସତେ
ଅଦ୍ୟାପିହ ଯେସନ ଉଭା ତୁଙ୍ଗଚୂଡ଼ା ପରେ
ଉଡାଉଛି ମହାମନ୍ତ୍ର ‘ଜୟଦେବ ଶିଖର’ ।

ଖେଳଇ ରଙ୍ଗିନ ଉଷା ରଙ୍ଗିନ ଜୁଆର
କୋଣାର୍କେ ବାଳାର୍କ ମନ୍ଦ ମୂର୍ଚ୍ଛନା ଉଦାର
ବସୁ-କଳା ସିଂହାସନେ ଲଭି ଅଭିଷେକ
ପଶୁରାଜେ ମୌନଶିଳା, ଶିଳା ଶିଳ୍ପ-ଟେକ

## ଶିଳ୍ପର ଅସ୍ପଦର୍ଶନ

ଅନନ୍ତ ଜଳଧି କୋଳେ
ଊର୍ମି ଦୋଳାସନେ ଦୋଳେ
ସମୁଜ୍ଜ୍ୱଳ କାନ୍ତି ଅହା କେ ଦେବ ବାଳକ ?
ଅସିଥିଲ ସଅହସ୍ର ମର୍ତ୍ତ୍ୟ ଭୂଲ ଲକ୍ଷ୍ୟ ।

ଉତ୍କଟେ ସଜୀବ ଶିଳା—କୋଣାର୍କ ମନ୍ଦର
ସିନ୍ଧୁଗର୍ଭେ ନନି ମେଶେ ନଟେଶ୍ୱ ଗମ୍ଭୀର
ମୁରଲୀ ପାଷାଣ କଂସା, ମଞ୍ଜୁଳ ଭୂତଳେ
ଶିଳାତନ୍ତୁ ରଚି ସତେ ଅହା । କି ବାକଲେ
"ହେ ବାଳକଦ୍ରଷ୍ଟା ମୋର".
ଗୋପନ ପ୍ରୟାଣେ ତୋର
କେବଳ କଳପେ ନାହିଁ ମୂର୍ତ୍ତି ମୂକଶିଳା
ଶର କଳପିବ ଧରି ସ୍ମୃତି କଳାଶିଳା ।

"ଶିଳ୍ପି-ରାଜ ! ଶିଳ୍ପମୂର୍ତ୍ତି ମୋ ଶ୍ରେରେ ଅସ୍ଥା
ଅହଂକାର ଶୂନ୍ୟ ଅହା ସାତ୍ତ୍ୱିକ; ମହାତ୍ମା !
ନବେଶି ତୋର୍ଥେ ଯେବେ ବନ୍ଦିକ୍ଲିଲ କାୟା
ସ୍ରଷ୍ଟା ତୁମେ ସୃଷ୍ଟିମୂର୍ତ୍ତି ସିଦ୍ଧା ପ୍ରଜ ମାୟା
ରଚିବ ତର୍ପଣ ତବ
ମାନ କଳା-ଗଉରବ
ତୁମ୍ଭେ ଦେବ ଏକାଧାରେ ତ୍ୟାଗ ମହାଗାଥା
ପ୍ରସ୍ତରର ଭଗ୍ନଅଙ୍ଗ ଜୀର୍ଣ୍ଣକଣ୍ଠେ ବାର୍ତ୍ତା ।

ଇଙ୍ଗିତେ।

ମିଶିଲେ ମୁଁ ଧ୍ୱସଅଙ୍ଗେ ନାହିଁ ହ୍ରସ୍ୱା । ଭସ୍ମ
ଅଙ୍କ ତବ ଶୁଭ୍ର ଅସ୍ଥା ଅଜେୟ ଅକ୍ଷୟ
ଦଧୀଚିଙ୍କ ବଜ୍ରାଘାତେ ମୋ ତନୁ ବଚୂର୍ଣ୍ଣ
ହେବ ଯେଣୁ ମୂର୍ଦ୍ଧି ଭଳା ଅହଂକାରପୂର୍ଣ୍ଣ
ତେଜି ଜ୍ଷାନ୍ଧଣ-ରଥ
ଚଳେ ଯଥା ନଭପଥ
ଅର୍କ ସହସ୍ର କିରଣେ, ତଥା ଦେହ ବାନାର୍କ
ସଙ୍କଟ ଜଗତେ ଚିର; ପ୍ରଣମେ ଚରଣାଙ୍କ ।”



## ତରକ୍ତ ପଳା ନା ହରିଣ ଶିଶୁ

ଦରକ୍ତ ପଳାଶ ବନ ଅନ୍ତସ୍ତଳେ
ଲୁଚିଯାଇ ଲତାପତର ତଳେ
କାହିଁପାଇଁ କହ ହରଣୀ ଶିଶୁରେ
ପଲକର ମୋର ଦୃଷ୍ଟିପାତରେ ।
ବ୍ୟାଧ ମଣିଲ କି ମୋତେ ରେ ଶାବକ
ବ୍ୟାଧରୂପୀ ମୁହିଁ ମଣିଷ ଯେଣୁ
ଦୃଷ୍ଟିଗରେ ବନ୍ଧ ହୋଇ କରେ ଶିଶୁ
ପସ୍ରଣ ଝଡଲେ ପଳାଇ ଠେଣୁ ।
ସବୁଜ ବନେ ତୋ ସବୁଜ ସଂସାର
ସବୁଜ ଅନନ୍ଦ ସଦା ତୁ ଖେଳ
କୁଟିଳ ସାହାସ ଦୁନିଆ ମଣିଷ
ପଣି ଦୂରେ ଲେଡୁ ଶରଣୀ ତୋର ।

ବନଦେବତା

ଥରେ ଫେରେଁ ଲକ୍ଷ ପତର ଗହଳେ
ଦଣ୍ଡେ ପୁଣି ମୋତେ କରେଣି ବନ୍ଧୁ
ସେଇ ବ୍ୟାଧଜାତ ଲୋଲୁପ ମଣିଷ
ଅବା ତୋ ସବୁଜ ବନ୍ଧୁ କି ଅଛ ।
ନୁହଁଇ ମୁଁ ବ୍ୟାଧ, ନୁହେ ମୁଁ କୁଟିଳ
ଅନ୍ତର-ହରଣା ପଢ଼ଇ ସ୍ତବ
ତୋର ଦରଶନେ ସବୁଜ ସାଥି ମୁଁ
ଅସିଛି ଅବେଗେ ସ୍ୱରୂପ ଭବ ।
କରେଣି ଥରେ ତୁ ବନ୍ଧୁ । ମୋ ନୟନେ
ତୋର ଦରଶନେ ମୋ ପ୍ରାଣ ଜୁଡ଼ୁ
ଫୁଟୁଲା ଉଠିଛି ଜଗତ-ବିଭବ
ତୋ ସବୁଜଠାରେ ମଣଇ ତୁଚ୍ଛ ।
ଲୁବ୍ଧ ମଣିଷର କୋଳାହଳ ଦୂରେ
ପ୍ରଜ୍ଞାର ନିସର୍ଗ ମଣ୍ଡଳ ମଝେ
ଶୁଣ ପ୍ରେମମୟ ମଙ୍ଗଳ ଗାୟତ୍ରୀ
ଶୁଣୁ ସୁଲଳିତ କାକଳି ସ୍ୱରେ ।
ନୀରବ ଧ୍ୟାନରେ ତାପସ ବିଶ୍ୱ
କରେ ସତ୍ୟ ଶିବ ସୁନ୍ଦର ପୂଜା
କେଉଁ ନାହୁଁ ଘଣ୍ଟ ବଜାଇବୁ ବାଜା
ଉଡ଼ାଇବୁ ବିଶ୍ୱ ବିଜୟ-ଧ୍ୱଜା ।
ହୃଦ ଶିର ମୋର ଥରେ ଦେଖ ବନ୍ଧୁ
ତମ ଭାବ ମୋର ଅନ୍ତରେ ଭରୁ

ତଟେଚ ପଳା ନା ହରଣ ଶିଶୁ

ସେ ମହାସାଧନ ନିରତ ସାଧକ
ଛାୟା ବ୍ୟବଧାନ ମାଡ଼ଇ ପଥ ।
ଅସ ବନ୍ଧୁ ମୋର ନ ଯାଅ, ନ ଯାଅ
ନିରେଖ ଥରେ ମୋ ଅନ୍ତର ଛବି
ତୁମେ ବନ୍ଧୁ ମୋର ତୁମର ସଫରେ
ଅଳେଖତ ହୋଇ ଧାଉଁଛି ଛବି ।



## କାବ୍ୟ-ଛାୟା

କୁଞ୍ଜ କୁଞ୍ଜ ରାନେ ତଟିନୀ ଗୁଲଇ
କଲ୍ଲୋଳ-କାହାଳୀ ବାଇ
ସଞ୍ଜୀବଣୀ ଅସେ ସବଗ୍ର ଓହ୍ଲାଇ
କଳାପାଠ ଶାଢ଼ୀ ଗ୍ଲଇ ।
ଅଷାଢ଼ ଜସାଣ ବଉଦ-ରଥର
ଜଡ଼ାଲେ ତାରକା ଥାଇ
ଜହ୍ନିମାର ଖେଲେ ଲୁଚକାଲି ଖେଳ
ସହଚରୀ ମେଳ ପାଇ ।
ସରଳ ତରଳ ପରାଣ ଯାହାର
ତା ପାଖୁଁ କେ ପାରେ ଛପି ?
ତା' ହୃଦ-ମୁକୁରେ ବନ୍ଧୁମୂର୍ତ୍ତି ଫଟେ
ଥାଉ ସେ ଯେଣେ ଯଦ୍ୟପି ।

ଦରପଣ ଝଲା ତଟିନୀ-ହୃଦକେ
ଯହିଁ ଯାଉଥାଏ ଡାଗ
ବମ୍ବିତ ହୁଅର ପ୍ରତଛବି ଡାର
ଚେପଣେ ଯାଏ ନଭ ସାଗ ।
ଜୁଈ ଅସିଲେଣି ଦଲ ଦଲ ହୋଇ
ସୁଦୂରୁ ଚଢ଼େଇ ସଙ୍ଘ
ଷୋଡ଼ଶୀ-ତଟିନୀ ଅଭିସାର ଗୀତେ
ସତେ କି ହୋଇ ବାହୁଳ ।
କଳା ବଜ୍ରଦରେ ଝଂଟକେ ବିଜୁଳି
ପରିହାସେ ଠାରେ ଅଖି
'ଯାଅ, ମାଙ୍କ ଗୋଷ୍ଠୀ' ଦଂଅ-ରସିକ
ପ୍ରୀତିରେ ନ ପିବୁ ଲକ୍ଷ ।
କୂଳ ଦେଉଳରେ ବାଜୁଛି ଘଣ୍ଟା
ଶଙ୍ଖ ମୃଦଙ୍ଗର ନାଦ
ପବନ ପାଗଳ ବନ୍ଧୁ-ପ୍ରେମେ ବାଏ
ପଥରେ ମର୍ମର ବାଦ୍ୟ ।
କଳାପତଳୀରେ ସୁବର୍ଣ୍ଣ ମାଣିକ୍ୟ
ଧଧକ ଜଡ଼ାଣ ଭଳି
କୂଳବତୀ ମାଳା ଅନ୍ଧାର ଫୁଟାଇ
ପଲକେ ଜଠିଲେ ଜଳି ।
ବତୀସ୍ତମ୍ଭ ଦୁରେ ଅନ୍ଧାର ଜଡ଼ାଲେ
ଦୁଇଟି ଉଜଳ ପ୍ରାଣ

# ରଙ୍ଗିତା

ତରଳ ତଟିନୀ ସଙ୍ଗତେ ମିଳାଇ
ଦର୍ପଫୁଟା କଣ୍ଠଗାନ ।
କହେ ଗାଏ 'ତମେ ମୋର, ମୁଁ ତମର'
ଅନେକ ଲଳିତ ସ୍ୱରେ
କ୍ଷୀର ସଙ୍ଗେ ଜଳ ବୋଲି ଦେବ ପ୍ରାୟ
ଶ୍ରବଣେ ମଧୁର ସ୍ୱରେ ।
ଏକ କହେ 'ହେଲେ ଦରଅ ମୁଁ,' ଅନ
'ତଟିନୀ ତମର ପ୍ରିୟା'
'ମୁଁ ସଙ୍ଗୀତ ତମେ ମୂର୍ଚ୍ଛନା, ଅନେକ
ହେଲେ ମୁହିଁ ପ୍ରିୟ ଛାୟା ।
ତମେ ମୋ ନାୟିକା, ନାଥ ମୁଁ ତମର
ପୀରତି ଅମ ଶ୍ରେଣୀ
କୁଟିଳ ଦୁନିଅ କଣ୍ଟାଇ ମୁକର
ଧରିବା ଅମ ସରଣୀ ।
'ତମେ ମୋର' ମୁହିଁ ତମର ଯଦିଟି
ପୀରତି ବେଦଟେକ ଲେଖା
'ଚନ୍ଦ୍ରୁ ଜୋଛନା' 'ରବିଠାରୁ ପ୍ରଭା'
ଭିନ୍ନ କାହିଁ ଅଛୁ ଦେଖା ?"
ଗଗନଟା ଘୋଟି ବଉଦ ଅସିଲ
ଝଟକେ ଚଞ୍ଚଳା କୋଳେ
ସୁଙ୍କ ସୁଙ୍କ ତାନେ ବରଷା ସଙ୍ଗୀତ
ସିଞ୍ଚିଲେ ପୀରତି ସ୍ରୋଳେ ।

ବହୁଦ ବଚ୍ଛୁଳ ଛନ୍ଦ-ଲହରୀରେ
ଭୃବଗଲ୍ଲ ବେଣୀ ସ୍ୱର
ପାଶ୍ୱବାରେ ମୀର ଟିଲଲେ କ୍ଷ ବେବେ
ମିଳଇ ଭେଦ ଅନ୍ତର ?
ବଶାଳ ନଗରୀ ଭ୍ରବ ବଖ୍ରେରେ କି
କାବେଳେ ସେ ପ୍ରେମ ଛବି ?
ଦୀପାବଳୀ ଜେଣ ଅପଲ୍କ ତାର
ଭ୍ରବ ନିମଗନ ଭବ ।
ଅଦୂରେ ଶୁଭନ୍ତ ଠନ୍ ଠନ୍ ହୋଇ
ଘଣ୍ଟାନାଦ ଦଶ ବାର
କସେ ବେନି ଭୁଷା ତରୁଣ-ତରୁଣୀ
ଧରି ରାଜପଥ ଧାର ।
ଉଚ୍ଛୁଥିଲ ତନ୍ଦ୍ର ଗୃହଥିଲେ ବେନି
ଅସରନ୍ତି ଭାଷା କହୁ
ଶୂନ୍ୟ ରାଜପଥ ମୂକ ଅଟ୍ଟାଳିକା
ସାକ୍ଷୀ ମାତ୍ର ଥିଲେ ରହୁ ।



# ସ୍ୱର୍ଣ୍ଣ-ପକ୍ଷୀ

ଢଳ ଢଳ ଚଞ୍ଚଳ ତଟିନୀର ଲହରେ
ଝଲ୍ ମଲ୍ କାଞ୍ଚନ ଅଞ୍ଚଳ ପବନେ
ବିମ୍ବିତ ହସ ହସ ମୁଖଶ୍ରୀ ଯୁଗଳ
ସ୍ତବ୍ଧ ଜଟିଳମୟ- କଣ୍ଠ-ଧ୍ୱସ-ଚଞ୍ଚଳ
ଫଗୁଣର ମୁକୁଳିତ ଚୂତ ଶ୍ୟାମକୁଞ୍ଜେ
ପଞ୍ଚମେ ପିକ ଗାଏ ମଧୁକର ଗୁଞ୍ଜେ
ସୁଶୀତଳ ମଳୟ—
ଅମୃତ ପରଶରେ ଢଳଳ ଅଥୟ ।

ଶୂନ୍ୟ ଧରଣୀପରେ ଅନ୍ୟ କେ ନାହିଁଟି
ସ୍ୱର୍ଣ୍ଣ-ଜଗତ-ଯୁବ ଯାତ୍ରୀ ସେ ଦୁଇଟି
ଯୌବନ-ନନ୍ଦନ ସ୍ୱର୍ଣ୍ଣ ପକ୍ଷୀ ଯୁଗଳ
ଯୌବନ ସ୍ୱର୍ଗୀୟ- ସୁଧା-ପାନେ ବିହ୍ୱଳ
ବନ୍ଧନ ଦୂରେ, ଦୁଇ ଏକ ପାଶେ ବନ୍ଧା
ତରୁଣ-ତରୁଣୀ— ପ୍ରେମ ରଙ୍ଗିନ ସନ୍ଧ୍ୟା
"ଅଲେକ ମୁଁ ଛାୟା ଗୋ"
ଏକ ପରେ ଅନ ଗାଏ "ଜୀବନ ତୁ କାୟା ଗୋ"

୬

Printer R. N. Rath, at the Satyabadi Press, Cuttack.

# ଲେଖକଙ୍କ ଅନ୍ୟାନ୍ୟ ଗ୍ରନ୍ଥାବଳୀ

| | |
|---|---|
| ଜୟନ୍ତିଭଗ୍ନା | ଟ ୦ ୫ |
| ବାଳ-ପ୍ରଶ୍ନ | ଟ ୦ ।୵ |
| ପଲ୍ଲୀଛବି | ଟ ୦ ।୵ |
| ପ୍ରାୟଶ୍ଚିତ୍ତକାର ? | ଟ ୦ ।୵ |
| ଭକ୍ତି-ଅର୍ଘ୍ୟ | ଟ ୦ ।/ |
| କବିର୍ ସ୍ୱପ୍ନ | (ଯନ୍ତ୍ରସ୍ଥ) |

ପ୍ରାପ୍ତିସ୍ଥାନ :—
**କଟକ ପବ୍ଲିଶିଂ ହାଉସ,**
ପୋ: ଗୃଦନଚୌଳ,
**କଟକ**

ମୂଲ୍ୟ ବାରଅଣା ମାତ୍ର


କଟକ ସତ୍ୟବାଦୀ ପ୍ରେସ ଅନୁକୂଲ୍ୟରେ

ଶ୍ରୀ ବାଞ୍ଛାନିଧି ଦାସଙ୍କ ଦ୍ୱାରା

ପ୍ରକାଶିତ

ପ୍ରଥମ ସଂସ୍କରଣ

୧୯୪୨

ମୁଦ୍ରାକର :—

ଶ୍ରୀ ରାଧାନାଥ ରଥ

ସତ୍ୟବାଦୀ ପ୍ରେସ, କଟକ